# ଭାଗବତ-ସୂକ୍ତି-ମୁକ୍ତାବଳୀ

"ଏ ଧର୍ମ ବ୍ରହ୍ମ-ନିରୂପଣ । ଶୁଦ୍ଧ ଗୁପତ ସନାତନ ॥
ଏ ଧର୍ମ ସାଧ୍ୟ ଆଉ ଦୂରେ । ଯେ ପ୍ରାଣୀ ଶୁଣି ଶ୍ରଦ୍ଧା କରେ ॥
ସକଳ ପାପୁଁ ଯେ ତରଇ । ଅନ୍ତେ ପରମ ଗତି ପାଇ" ॥
॥ ୧୧-୩୦-୨୪ ॥

କୁଞ୍ଜବିହାରୀ ତ୍ରିପାଠୀ, ଏମ୍. ଏ, ବି.ଏଲ୍., ପିଏଚ୍. ଡି. (ଲଣ୍ଡନ)

# ଶ୍ରୀ ଭାଗବତ-ସୂକ୍ତି-ମୁକ୍ତାବଳୀ

ସଙ୍କଳୟିତା ଏବଂ ପ୍ରକାଶକ—

ଅଧ୍ୟାପକ ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ

( ଭୂତପୂର୍ବ ପ୍ରାଧ୍ୟାପକ, ରେଭେନ୍ସା କଲେଜ )

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ
ବ୍ରହ୍ମପୁର (ଜିଲ୍ଲା ଗଞ୍ଜାମ)

ପ୍ରଫେସରପଡ଼ା
କଟକ-୩



ପ୍ରଥମ ପ୍ରକାଶ—୧୯୭୧

(ଭୌତିକ) ମୂଲ୍ୟ—ଟ ୧-୨୫

# ଉତ୍ସର୍ଗପତ୍ର

ଏହି ଜଗତରେ ଅବତୀର୍ଣ୍ଣ ହୋଇ

ବା ଜନ୍ମଗ୍ରହଣ କରି

ଯେଉଁ ମହାତ୍ମାମାନେ, ସନ୍ନ୍ୟାସୀମାନେ ଏବଂ ସାଧୁମାନେ

ଜାତି-ବର୍ଣ୍ଣ-ନିର୍ବିଶେଷରେ

ଭଗବତୋକ୍ତ ନୀତିତତ୍ତ୍ୱ ନିଜ ନିଜ ଜୀବନରେ

ପାଳନ କରି ପ୍ରଚାର କରିଅଛନ୍ତି ବା କରୁଅଛନ୍ତି

ସେହିମାନଙ୍କ ପବିତ୍ର-ସ୍ମୃତ୍ୟର୍ଥେ

ଏ ପୁସ୍ତିକାଟି ଉଦ୍ଦିଷ୍ଟ ।

# ମୁଖବନ୍ଧ

ଜଗନ୍ନାଥ ଦାସ ( ପ୍ରାୟ ଖ୍ରୀ: ୧୪୮୦—୧୫୪୦ ପ୍ରାୟ )ଙ୍କ ଭାଗବତ ଓଡ଼ିଆ ସାହିତ୍ୟର ସବୁଠାରୁ ବଳି ଜନପ୍ରିୟ ଗ୍ରନ୍ଥ । ଧର୍ମଗ୍ରନ୍ଥ ଭାବରେ ଭଗବଦ୍ ଗୀତା ଓଡ଼ିଶାରେ ପୂଜ୍ୟ ହେଲେ ହେଁ, ଦାସଙ୍କ ଭାଗବତ ପରି ଏହାର ଲୋକପ୍ରିୟତା ସମାଜର ସବୁ ସ୍ତରରେ ବ୍ୟାପ୍ତ ହୋଇ ନାହିଁ । ଦାସଙ୍କ ଭାଗବତରେ କେବଳ ଯେ ଋଗ୍‌ବେଦ, ଉପନିଷଦ୍, ଗୀତା, ମନୁସଂହିତା ପ୍ରଭୃତି ହିନ୍ଦୁ ଧର୍ମଶାସ୍ତ୍ରର ସାରାଂଶ ଦେଖିବାକୁ ମିଳେ, ତାହା ନୁହେଁ; ବୌଦ୍ଧ ଓ ଜୈନମାନଙ୍କ ଧର୍ମଶାସ୍ତ୍ର, ତଥା ବାଇବେଲ୍ ଏବଂ କୋରାନରେ ଲିଖିତ ବହୁ ନୀତିବାକ୍ୟ ଓ ଆଧ୍ୟାତ୍ମିକ ତତ୍ତ୍ୱ ମଧ୍ୟ ଦେଖିବାକୁ ମିଳେ ।

ବୁଦ୍ଧଦେବଙ୍କ ଉପଦେଶାବଳୀରେ ବୈଜ୍ଞାନିକ ବା ଗାଣିତିକ ପରିବେଷଣ ଦୃଷ୍ଟ ହୁଏ । ତାଙ୍କ ପଞ୍ଚଶୀଳ ହେଉଛି (୧) ଜୀବହିଂସା କର ନାହିଁ, (୨) ଅପହରଣ (ଚୋରି) କର ନାହିଁ, (୩) ମିଥ୍ୟା କହ ନାହିଁ, (୪) ମାଦକଦ୍ରବ୍ୟ ସେବନ କର ନାହିଁ, (୫) ଅ-ବ୍ରହ୍ମଚର୍ଯ୍ୟ ଆଚରଣ କର ନାହିଁ ।

ଯୀଶୁଖ୍ରୀଷ୍ଟଙ୍କ ଉପଦେଶାବଳୀରେ ମଧ୍ୟ ଏହି ନୀତି ବାକ୍ୟ-ଗୁଡ଼ିକ ସହିତ ଘନିଷ୍ଠ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ଯୀଶୁଙ୍କ ପ୍ରଧାନ ଉପଦେଶ ହେଉଛି (୧) Don't kill (ଜୀବହତ୍ୟା କର ନାହିଁ), (୨) Don't commit adultery (ପରଦାରାଭିମର୍ଷଣ କର ନାହିଁ), (୩) Don't steal (ଚୋରି କର ନାହିଁ), (୪) Don't lie (ମିଥ୍ୟା କହ ନାହିଁ), (୫) Honour your father and

mother (ପିତାମାତାଙ୍କୁ ସମ୍ମାନ କର), (୨) Love your neighbour as yourself (ପ୍ରତିବେଶୀକୁ ନିଜପରି ଭଲ ପାଅ) । Matthew 18, 19.

ବୁଦ୍ଧଦେବଙ୍କ ୧ମ ଶୀଳ ଭାଗବତରେ ଅନେକସ୍ଥ ଦେଖିବାକୁ ମିଳେ । ଯଥା—

ଏକ ଆରକେ ହିଂସା କରି ।
ନରକେ ପଡ଼ିଥାନ୍ତି ଯାଇ ॥
ମାଂସ ଭକ୍ଷଣେ ପଶୁମାରେ ।
ଯେ ଦୟାଧର୍ମ ନ ଚର୍ଚ୍ଚରେ ॥
ଅଜ୍ଞାନ ମୋହେ ହୋନ୍ତି ମତ୍ତ ।
ନରକେ ପଡ଼ନ୍ତି ଭୁରିତ ॥ ୧୦, ୧୧, ୯ ॥
ଯେ ପ୍ରାଣୀ ପରେ ହିଂସା କରେ ।
ଦେବତା ପୂଜା ସେ ନ ତରେ ॥ ୨, ୧୪ ॥

ବୁଦ୍ଧଦେବଙ୍କ ୨ୟ, ୪ର୍ଥ ଏବଂ ୫ମ ଶୀଳ ଭାଗବତରେ ଏହିପରି ଦେଖିବାକୁ ମିଳେ—

ସ୍ୱେର କରନ୍ତି ଲୋଭ କରି ।
ଜୁଆ ଖେଳନ୍ତି ଲୋକ ହୋଇ ॥
ଯେ ପ୍ରାଣୀ ମଦ୍ୟ ପାନ କରେ ।
ପର ରମଣୀ ଯେତୁ ହରେ ॥
ଅଜ୍ଞାନ ମୋହେ ହୋନ୍ତି ମତ୍ତ ।
ନରକେ ପଡ଼ନ୍ତି ଭୁରିତ ॥ ୧୦, ୧୧, ୮ ॥

ଶାକ୍ୟମୁନିଙ୍କ ୩ୟ ଶୀଳ ଭାଗବତରେ ଏହିପରି ଉକ୍ତ ହୋଇଅଛି—

ସତ୍ୟ କହିବ ନିତ୍ୟ ଭୂଖଣ୍ଡେ ।
ଜେବେ ହେଁ ନଥିବ ପାଷଣ୍ଡେ ॥ ୧୧, ୪, ୨୭ ॥
ସତ୍ୟ ଉପରେ ଧର୍ମ ନାହିଁ ।
ଏ କଥା ଭୂମି ଅଛି କହି ॥
ସର୍ବ ଅପ୍ରାଧ ସହି ପାରେ ।
ମିଥ୍ୟାର ଭରେ ମୂର୍ଚ୍ଛି ଡ଼ରେ ॥ ୮, ୨୦ ॥

କଳି (ସଇତାନ)କୁ ପାଞ୍ଚୋଟି ସ୍ଥାନରେ ରହିବା ପାଇଁ ଅନୁମତି ଦେବା ଛଳରେ ମଧ୍ୟ ଭାଗବତରେ ଶାକ୍ୟମୁନିଙ୍କ ପଞ୍ଚଶୀଳର ଉପଦେଶ ଦିଆହୋଇଅଛି, ଯଥା —

ଶୁଣ ପ୍ରକାରେ ସ୍ଥାନ ଦେଲା ।
ଜଗତେ ଅଧର୍ମ ପର୍ତ୍ତି ମେଳା ॥
ଦ୍ୟୁତ ଯୁବତୀ ମଦ୍ୟ ପାନ ।
ପ୍ରାଣୀ ମାରଣ ଯେବା ସ୍ଥାନ ॥
ମିଥ୍ୟା ବଚନ ଦ୍ୟୁତ ମଧ୍ୟେ ।
କାମକାମିନୀ, ମଦମଦ୍ୟେ ॥
ପ୍ରାଣୀ ମାରଣେ ରଜୋଗୁଣ ।
ସୁବର୍ଣ୍ଣ ମଧ୍ୟେ ଶପୂରଣ ॥
ଏ ପଞ୍ଚ ସ୍ଥାନ ତାକୁ ଦେଲା ।
ପର୍ତ୍ତି ଅଧର୍ମ ସଙ୍ଗ ମେଳା ॥ ୧, ୧୭, ୩୮, ୩୯ ॥

ବୁଦ୍ଧଦେବଙ୍କ ୪ମ ଶୀଳର ଅର୍ଥ ହେଉଛି ବ୍ରହ୍ମଚର୍ଯ୍ୟ ଧାରଣ କରିବା । ଏହାର ଅର୍ଥ ନୁହେଁ ଯେ ସମସ୍ତେ ଅବିବାହିତ ରହିବା । ଏହାର ଅର୍ଥ ଏହି ଯେ, ସନ୍ନ୍ୟାସୀମାନେ ବ୍ରହ୍ମଚର୍ଯ୍ୟବ୍ରତ ଧାରଣ କରିବେ ଏବଂ ଗୃହସ୍ଥ ଏବଂ ଗୃହପତ୍ନୀ ପରସ୍ପର ଧର୍ମାନୁକୂଳ

।

କାମସେବନ କରି ଅନ୍ୟପ୍ରତି କାମାସକ୍ତ ହେବେ ନାହିଁ । ଚାଣକ୍ୟଙ୍କ ଭାଷାରେ କହିବାକୁ ଗଲେ ଏହା ହେଉଛି "ପରଦାରେଷୁ ମାତୃବତ୍ ଦର୍ଶନମ୍" ।

ଅଗମ୍ୟା ଗମନରେ ଲୋକ ହୀନତେଜା, ନିନ୍ଦ୍ୟ ଓ ଅଳ୍ପାୟୁ ହୁଏ । ଏହା ଭାଗବତରେ ମଧ୍ୟ ସୂଚିତ ହୋଇଅଛି ।

ହେ ଭ୍ରାତ ଶୁଣ ମହାଭୁଜ ।
କପାଇଁ ହେଲୁ ହୀନ ତେଜ ॥
× × ×
ଅଗମ୍ୟା କଲୁ ବା ଗମନ ।
କିବା ହେଲୁ ସ୍ତ୍ରୀ ଢୀ ଧନ ? ୧, ୧୯, ୪୨ ॥

ପିତୃମାତୃସେବା ସମ୍ପର୍କରେ ଭାଗବତରେ ଅଛି—

ପୁତ୍ରର ଧର୍ମଟି ଏମନ୍ତ ।
ଯେ ବାକ୍ୟ କହିଲେ ପିତାମାତ ॥
ଆଦରେ ସର୍ବଥା କରିବ ।
ତେଣେ ସନ୍ତୋଷ ହେବେ ଦେବ ॥ ୩, ୨୪ ॥

ହିନ୍ଦୁ, ଖ୍ରୀଷ୍ଟିଆନ, ମୁସଲମାନ—ଏ ସମସ୍ତଙ୍କ ଧର୍ମଶାସ୍ତ୍ରରେ ଅଦ୍ୱିତୀୟ ପରମେଶ୍ୱରଙ୍କଠାରେ ଶରଣାଗତି ଉପଦିଷ୍ଟ ହୋଇଅଛି । ଇସଲମର ଅର୍ଥ ଶରଣାଗତି । ବୌଦ୍ଧ ଧର୍ମରେ ମଧ୍ୟ ବୁଦ୍ଧ, ଧର୍ମ ଏବଂ ସଙ୍ଘଠାରେ ଶରଣାଗତିର ବିଧାନ ଅଛି । ଭାଗବତରେ ପରମେଶ୍ୱର ଅଦ୍ୱିତୀୟ ଓ ତାହାଙ୍କଠାରେ ଶରଣାଗତି ବହୁ ସ୍ଥଳରେ ଉପଦିଷ୍ଟ—

ସୃଷ୍ଟିର ଅଗ୍ରେ ମୂର୍ତ୍ତି ଏକ ।
ମୋ ତତ୍ତ୍ୱ ପ୍ରକାଶେ ଅନେକ ॥
ସତ ଅସତ ପର ମୂର୍ତ୍ତି ।
ସେ ଅବଶେଷ ଶେଷ ରତ୍ନ ॥
ଏଣୁ ଏ ଆଦ୍ୟ ମଧ୍ୟ ଅନ୍ତେ ।
ମୋ ତତ୍ତ୍ୱ ଅନ୍ୟ କେ ଜଗତେ ॥ ୨, ୯, ୩୨ ॥
ଅଖିଳ ବ୍ରହ୍ମାଣ୍ଡ ଠାକୁର ।
ଅନାଦି ଅବ୍ୟକ୍ତ ଈଶ୍ୱର ॥
ସେ ପ୍ରଭୁ ଚରଣେ ମୋ ମତି ।
ଅନବରତେ ହେଉ ସ୍ଥିତି ॥

(୪, ୨୫ର ଅନ୍ତ୍ୟମପଦ)

ଭାଗବତର ଅନେକଗୁଡ଼ିଏ ସଂସ୍କରଣ ହୋଇ ଯାଇଅଛି, ଯଥା - ଗର୍ଭବନ୍ତ୍ ସଂସ୍କରଣ, ପଣ୍ଡିତଦାଶ ଶର୍ମା ସଂସ୍କରଣ, ରାଜକିଶୋର ସଂସ୍କରଣ, ବଙ୍ଗଳାଲିପିରେ ପ୍ରକାଶିତ ସଂସ୍କରଣ ଇତ୍ୟାଦି । ସ୍ୱର୍ଗତ ଚିନ୍ତାମଣି ଆଚାର୍ଯ୍ୟଙ୍କ ସଂସ୍କରଣ ରାଜକିଶୋର ସଂସ୍କରଣ ଉପରେ ପ୍ରତିଷ୍ଠିତ । ଏ ସମସ୍ତ ସଂସ୍କରଣ ମଧ୍ୟରେ ରାଜକିଶୋରଙ୍କ ସଂସ୍କରଣ ଅତ୍ୟନ୍ତ ଉପାଦେୟ । ଏଣୁ ଏହି ସଂସ୍କରଣରୁ କେତେକ ସୂକ୍ତି ଗୃହୀତ ହୋଇଅଛି ।

ଜଗନ୍ନାଥ ଦାସଙ୍କ ଭାଗବତର ଦୋବଳୀ ମୌଳିକ ଭାଗବତର ଆକ୍ଷରିକ ଅନୁବାଦ ନୁହେଁ । ଶ୍ରୀଧରଙ୍କ ଟୀକାର ଭାବାର୍ଥ ଗ୍ରହଣ କରି ମୂଳଶ୍ଲୋକର ଭାବକୁ ପଲ୍ଲବିତ କରି ଜନସାଧାରଣଙ୍କର ହୃଦୟସ୍ପର୍ଶୀ କରିବାକୁ ସେ ଚେଷ୍ଟା କରିଛନ୍ତି । ବେଳେ ବେଳେ ସେ ଅନ୍ୟାନ୍ୟ ଧର୍ମଶାସ୍ତ୍ରରୁ ସାର ମଧ୍ୟ ପ୍ରସଙ୍ଗକ୍ରମେ ଉପସ୍ଥାପନ

କରିଅଛନ୍ତି ବୋଲି ବୋଧହୁଏ । କେତେକ ପ୍ରସଙ୍ଗକୁ ଉତ୍କଳର ସାମାଜିକ ଅବସ୍ଥାର ଅନୁକୂଳ କରିବାକୁ ମଧ୍ୟ ସେ ପଶ୍ଚାତ୍ପଦ ହୋଇନାହାନ୍ତି ।

ଜଗନ୍ନାଥ ଅଜନ୍ମ ବ୍ରହ୍ମଚାରୀ ଥିଲେ; ତାଙ୍କୁ ଭକ୍ତିବାଦର ଅବତାର କହିଲେ ଚଳେ । ଚୈତନ୍ୟଙ୍କ ଅନୁସାରେ ସେ ରାଧାଭାବର ଅବତାର ଥିଲେ । ତାଙ୍କର ପଦାବଳୀ ଚଉତିଶା ଓ ହୃଦୟସ୍ପର୍ଶୀ କବିତା ସମଗ୍ର ଓଡ଼ିଆ ସାହିତ୍ୟରେ ବିରଳ । ସେ ବାରମ୍ବାର ପ୍ରକାଶ କରି ଯାଇଛନ୍ତି ଯେ ପରମେଶ୍ୱର ଯେଉଁ ଭାବ ତାଙ୍କ ହୃଦୟରେ ପ୍ରକାଶ କଲେ, ସେ ତାକୁ ହିଁ ଅନ୍ୟମାନଙ୍କ ସମ୍ମୁଖରେ ଉପସ୍ଥାପିତ କରିଛନ୍ତି । ତାଙ୍କ ଭାଗବତ 'ଭାଗବତ ଗୋସାଇଁ' ରୂପରେ ଓଡ଼ିଶାର ଗ୍ରାମେ ଗ୍ରାମେ ପୂଜିତ ହୋଇ ଆସୁଅଛନ୍ତି । ତେଣୁ ଶ୍ରୁତିବାକ୍ୟ ପରି ଭାଗବତର ପ୍ରତ୍ୟେକ ପଦ ପବିତ୍ର ଓ ଅପରିବର୍ତ୍ତନୀୟ । ଏଣୁ ଏଗୁଡ଼ିକୁ ମହାତ୍ମା ଜଗନ୍ନାଥଙ୍କ ହୃଦୟରେ ଈଶ୍ୱରଙ୍କ ପ୍ରତ୍ୟାଦେଶ ବୋଲି ଗ୍ରହଣ କରୁଅଛୁଁ । ଭାଗବତ ଗ୍ରନ୍ଥର ପ୍ରଦତ୍ତ ଐତିହାସିକ ପ୍ରସଙ୍ଗ, ଜ୍ୟୋତିଷ ବିବରଣୀ ପ୍ରଭୃତିରେ କେତେକର ଅଗ୍ରଗତିରେ ସନ୍ଦେହର ଅବକାଶ ସୃଷ୍ଟି ହୋଇପାରେ କିନ୍ତୁ ଆଧ୍ୟାତ୍ମିକ ତତ୍ତ୍ୱାବଳୀଗୁଡ଼ିକ ଯେ ଚିରନ୍ତନ ସତ୍ୟ ଏଥିରେ ଦ୍ୱିମତ ନାହିଁ । ଭାଗବତରେ ଗୂଢ଼ତତ୍ତ୍ୱରାଶି ବା ଗୋଲୋକତତ୍ତ୍ୱ ସମ୍ପର୍କରେ ଆଲୋଚନା କରିବା ସ୍ଥଳ ଏ ନୁହଁ । ଏ ସମ୍ପର୍କରେ ଡ: ଏସ୍: ବ: ଭଟ୍ଟାଚାର୍ଯ୍ୟଙ୍କର ଲଣ୍ଡନ ବିଶ୍ୱବିଦ୍ୟାଳୟର ଡ଼: ଲିଟ୍: ଥିସିସ୍ ରୂପେ ଗୃହୀତ ଗ୍ରନ୍ଥ The philosophy of Srimad Bhagbata Vol. I & II ) ଦ୍ରଷ୍ଟବ୍ୟ ।

ଆଜକୁ ପ୍ରାୟ ୩୦ ବର୍ଷ ହେଲା ଭାଗବତ ପାଠ ସମୟରେ ଯେଉଁ ସୂକ୍ତିଗୁଡ଼ିକ ମୋର ହୃଦୟକୁ ସ୍ପର୍ଶ କରିଛି ସେଥିରୁ କେତେକ

ଏଠାରେ ଦ୍ରବତ୍ତ ହୋଇଅଛି ମାତ୍ର । ଅନ୍ୟ ଦୃଷ୍ଟିରୁ ଦ୍ରଷ୍ଟବ୍ୟ ଅବେଶତ କେତେକ ପଦ ମଧ୍ୟ ମଧ୍ୟେ ମଧ୍ୟ ସନ୍ନିବେଶିତ ହୋଇଅଛି ।

ଏଗ୍ରନ୍ଥକୁ ସଜାଇ ମୁଦ୍ରଣ ଉପଯୋଗୀ କରିବାରେ ମୋର ସହକର୍ମୀ ଅଧ୍ୟାପକ ଶ୍ରୀ ସୁଦର୍ଶନ ଆଚାର୍ଯ୍ୟ ମୋତେ ହାର୍ଦ୍ଦିକ ସାହାଯ୍ୟ କରିଅଛନ୍ତି । ଏଥି ସକାଶେ ମୁଁ କୃତଜ୍ଞତା ପ୍ରକାଶ କରୁଅଛି । ସେ ସାହାଯ୍ୟ ନକରିଥିଲେ ଏଗ୍ରନ୍ଥ ପ୍ରକାଶିତ ହୋଇପାରି ନଥାନ୍ତା । ସଙ୍କଳନଗତ ତ୍ରୁଟି ସକାଶେ କ୍ଷମାପ୍ରାର୍ଥନା କରେଁ ।

ଜଗନ୍ନାଥ ଦାସଙ୍କ ଜୀବନୀ ଓ ରଚନା ସମ୍ପର୍କରେ ଏହି ଲେଖକଙ୍କର ସମ୍ବଲପୁର ୟୁନିଭରସିଟି ଜର୍ଣ୍ଣଲର ପ୍ରଥମ ଭାଗ ପ୍ରଥମ ସଂଖ୍ୟା ( ୧୯୬୭-୬୮ )ରେ ପ୍ରକାଶିତ ପ୍ରବନ୍ଧ ଏବଂ ଜଗନ୍ନାଥ ଦାସଙ୍କ ଭାଷା ସମ୍ବନ୍ଧରେ ଝଙ୍କାର ୧୯୬୭-୬୮ରେ ପ୍ରକାଶିତ ପ୍ରବନ୍ଧ ଅନୁସନ୍ଧେୟ । ଇତି ।

ସ୍ନାତକୋତ୍ତର ଓଡ଼ିଆ ବିଭାଗ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ
ବ୍ରହ୍ମପୁର

ବିନୀତ
କୁଞ୍ଜବିହାରୀ ତ୍ରିପାଠୀ
ତା ୮-୭-୭୧

---

ଦ୍ରଷ୍ଟବ୍ୟ:— ପୃ ୧୫ ଧା ୨୧ ରେ 'ହଦା' ସ୍ଥାନରେ 'ଭଜା' ପଠନୀୟ ।

# ଭାଗବତ ସୂକ୍ତି ମୁକ୍ତାବଳୀ

## ଭାଗବତ ପ୍ରଥମ ସ୍କନ୍ଧ

### ଦ୍ୱିତୀୟ ଅଧ୍ୟାୟ

ଧର୍ମ ଅରଜ ଯେ ବା ଧନ । ଭୋଗେ ନୋହେ ତା ପ୍ରୟୋଜନ ॥
କୃଷ୍ଣ କଥାରେ ରତି ଧାର । ସେ ପ୍ରାଣୀ ଭବ ମଧ୍ୟେ ସାର ॥୧୫॥
ହରି କଥାରେ ଯାର ଶ୍ରଦ୍ଧା । ତାକୁ ନ ଲାଗେ ଭବ ବାଧା ॥୧୬॥

### ତୃତୀୟ ଅଧ୍ୟାୟ

ଏ କଳିଯୁଗେ ଯେତେ ନରେ । ପଡ଼ିବେ ମାୟା ଅନ୍ଧକାରେ ॥
ତାହାଙ୍କୁ ତପନ ଉଦିତ । ହୋଇବ ଭବେ ଭାଗବତ ॥୪୪॥

### ପଞ୍ଚମ ଅଧ୍ୟାୟ

ପର ଅପର ବ୍ରହ୍ମଜଳେ । ଭ୍ରମର ସ୍ନାନ ସୁନଷ୍ଟଳେ ॥୨॥
ପ୍ରବନ୍ଧେ ଭାଗବତ କର । ଅଖିଳ ଜନଙ୍କୁ ଉଦ୍ଧର ॥୧୩॥
ହରି ଚରିତ ଯାପକର । ଜନ୍ତୁଙ୍କୁ ଅନ୍ଧାରୁ ଉଦ୍ଧର ॥୧୭॥
ଯାହା ଭୋଜନେ ବ୍ୟାଧି ଜାତ । ତେଣେ କେବେ ହେଁ ନୋହେ ଶାନ୍ତ ।
ମିଶ୍ରିଲେ ସେ ଅନ୍ୟ ଦ୍ରବ୍ୟରେ । ତେବେ ବ୍ୟାଧିକୁ ନାଶ କରେ ॥୩୩॥

## ଷଷ୍ଠ ଅଧ୍ୟାୟ

ସଂସାର ଈଶ୍ୱର ଅସ୍ତରେ । କାଷ୍ଠ ପିତୁଳ ଯେହ୍ନେ ହସ୍ତେ ॥୭॥

## ସପ୍ତମ ଅଧ୍ୟାୟ

ଶରଣାଗତ ରଥହୀନ । ଯୁଦ୍ଧେ ଶଙ୍କିତ ରିପୁଜନ ।
ଏହାଙ୍କୁ ବଧ ଯେ କରନ୍ତି । ଜୀବନ ଥାଉଁ ସେ ମରନ୍ତି ॥୩୬॥
ପର ଜୀବନ ମାରି ଅଣି । ଆତ୍ମାକୁ ପୋଷନ୍ତି ଯେ ପ୍ରାଣୀ ।
ତାର ମାରଣେ ବହୁ ପୁଣ୍ୟ । ବେଦେ କହନ୍ତି ଦ୍ୱିଜଜନ ॥୩୭॥
ଏହାର ଗର୍ଭଜନମୀ ମାତା । ସେ ପୁଣ୍ୟବନ୍ତୀ ପତିବ୍ରତା ।
ବେଦନ ନକରନ୍ତୁ ସେ ଶୋକେ । ମୋହର ପ୍ରାପ୍ତ ଅଶ୍ରୁମୁଖେ ॥୦୭॥

## ଅଷ୍ଟମ ଅଧ୍ୟାୟ

କାଳର କ୍ରୀଡ଼ା ଏ ଜଗତ । କାଳକୁ ଜିଣିବା ସାମରଥ ॥୮॥
ଯାହାକୁ ରଖିବେ ଅନନ୍ତ । କି କରି ପାରେ ବଳବନ୍ତ ॥୧୭॥
ଉତ୍ତମ କୁଳେ ଜନ୍ମ ହୋଇ । ବିଦ୍ୟା ସମ୍ପଦ ଯେବେ ଥାଇ ।
ବୁଡ଼ଇ ମତ ଗର୍ବ ଭରେ । ସେ ତୋତେ ପାଇବେ କେମନ୍ତେ
ତୁ ନାଥ ଜଗତ ଜୀବନ । ତୁ ଅକିଞ୍ଚନ ଜନ ଧନ ॥୨୭॥
ସଂମେ ତୁ ବସ୍ତୁ ସବୁ ଦେହେ । ପ୍ରାଣୀ ଯେ ତୋର ମାୟା ମୋହେ
ଭଜନ୍ତି ଅନ୍ୟ ଅନ୍ୟ ଭାବେ । କଳି କରନ୍ତି କଳିଯୁଗେ ॥୨୮॥
ତୋ ଅବତାର ଏ ଜଗତେ । ଗୋରୁ ବ୍ରାହ୍ମଣ ଦେବହିତେ ॥୪୩॥
ପ୍ରଜାପାଳନେ ଧର୍ମ ଯୁଦ୍ଧେ । ଦୋଷ ନଲାଗେ ଶତ୍ରୁ ବଧେ ॥୫୦॥
ଦେହେ ଲାଗିଲା ପଙ୍କ ଯେହ୍ନେ । ନଯାଇ ପଙ୍କ ପ୍ରକ୍ଷାଳନେ ।
ମଦ୍ୟକୁ ଅଣି ଦେହେ ବୋଳ । ମଦ୍ୟେ ଯେସନେ ତା ପଖାଳ ॥୫୨॥

## ନବମ ଅଧ୍ୟାୟ

କାଳର ବଶ ଏ ଜଗତ । ପ୍ରାଣୀଏ କାଳର ଆୟତ୍ତ ।
ସେ କାଳ ବଶେ ସର୍ବେ ଚଳ । ପବନେ ଯେହ୍ନେ ଘନାବଳ ॥୧୪॥

## ଏକାଦଶ ଅଧ୍ୟାୟ

ଚଣ୍ଡାଳ୍କୁ ଛତ୍ର ଯାଏ ପ୍ରଜା । କର ତୋଷିଲେ ଦେବରାଜା ।

## ଦ୍ୱାଦଶ ଅଧ୍ୟାୟ

ବ୍ରାହ୍ମଣ ଜନବ୍ରତକର । ସତ୍ୟ ପ୍ରତିଜ୍ଞ ଗୁଣଧର ॥୧୯॥
ପୃଥିବୀ ସମ ଧୀର ଚେତା । ସବୁଷ୍ଟୁ ଯେହ୍ନେ ପିତାମାତା ॥୨୨॥

## ତ୍ରୟୋଦଶ ଅଧ୍ୟାୟ

ମାଣ୍ଡବ୍ୟଠାରୁ ଶାପ ପାଇ । ଯମ ବିଦୁର ଦେହ ବହି ॥୧୭॥
ଜଗତ ଗିଳନ୍ତୁ ଯାହାକୁ । କେ ଥୋଇବ ରଖିବ ତାହାକୁ ॥୨୫॥
ଦ୍ୱିପଦ ଚତୁଷ୍ପଦ ଯେତେ । ବିପଦେ ତାହାଙ୍କ ଆୟତ୍ତେ ॥୨୬॥
ପ୍ରବେଶି ଅନାହତ ପୁରେ । ଗୋବିନ୍ଦ ନାମ ଧରି ଧୀରେ ।
ବିସ୍ମୃତ ଯେହ୍ନେ ଘଟାକାଶ । ମହାକାଶରେ ତା ପ୍ରବେଶ ।

## ଚତୁର୍ଦ୍ଦଶ ଅଧ୍ୟାୟ

ହେ ଭ୍ରାତ ଶୁଣ ମହାଭୁଜ । କପାଇଁ ହେଲୁ ହୀନ ତେଜ ?
ଲଭିଲ ବସ୍ତୁ କେ ହରିଲ । ତୋତେ ଅବଜ୍ଞା କେ ବା କଲ ?
ଚିର ପ୍ରବାସେ ଦୁଃଖ ଚିନ୍ତା । ତେଣୁ ବା ବଶୁ ମଳିନତା ॥୩୯॥
କେ ବା ଭର୍ତ୍ସନା ଅମଙ୍ଗଳେ । ତୋତେ ସମ୍ପର୍କ ବାକ୍ୟବଳେ ?

ଅର୍ଥ ପ୍ରାଣୀଙ୍କୁ ଦେବା ଭଲୁ । ମାଗନ୍ତେ କଅବା ନଦେଲୁ ? ୪୦॥
ବୃଦ୍ଧ ବ୍ରାହ୍ମଣ ଜରମାଖୀ । ସ୍ତ୍ରୀ ଶିଶୁ ବାଳକ ରୋଗୁ ଦୁଃଖୀ ।
ବେଗ ଚିହ୍ନିତେ ଯେ ବେଦନ୍ତ । ସେ ଅବା ଶରଣ ପଶନ୍ତ ।
ଏହାଙ୍କୁ ଦୟା ତୁ ନକଲୁ । ତେଣୁ ବା ଅଶୁଭ ବଣିଲୁ ॥୪୧॥
ଅଗମ୍ୟା କଲୁ ବା ଗମନ । କି ବା ହରିଲୁ ସ୍ତ୍ରୀ ଶିଶୁ ଧନ ।
ମାର୍ଗେ ଅପନ୍ତେ ତୁ ଟେକିଲେ । କେ ବା ଜିଣିଲା ତୋତେ ବଳେ ।
ବାଳକ ବୃଦ୍ଧ ନଭୁଞ୍ଜାଇ । ଆଗେ ଭୁଞ୍ଜିଲୁ କି ବା ତୁହି ।
କି ଅବା ନିନ୍ଦ୍ୟକର୍ମ କଲୁ । ଏଣୁ ତୁ ଏମନ୍ତ ବଣିଲୁ ॥୪୨॥

## ପଞ୍ଚଦଶ ଅଧ୍ୟାୟ

ଅଶେଷ କର୍ମପାଶ ଛେଦ । ଯୋଗେ ଶରୀର ରକ୍ଷ ବୁଦ୍ଧି ।
ବଚନ ମନେ ଲୀନ କର । ବାୟୁ ଧାରଣେ ମନ ଧର ।
ବାୟୁ ଧାରଣ ପ୍ରାଣ ଯେହ୍ନ । ତାହାଙ୍କୁ ଉପାନେ ମିଶାଇ ।
ଅପାନ ଉତ୍ସର୍ଗ ସନ୍ଧିତ । ସେ ମାର୍ଗେ ହୋଏ ଅନ୍ତର୍ଗତ ।
ସେ ମୃତ୍ୟୁ ଦେବଙ୍କୁ ଜିଣନ୍ତେ । ପଞ୍ଚଙ୍କୁ ଜିଣିରେ ଏକେଇ ।
ପୁଣି ପଞ୍ଚଙ୍କୁ ତିନ ଗୁଣେ । ତ୍ରିଗୁଣ ସମସ୍ତ କାରଣେ ।
ତାହାଙ୍କୁ ଜଡ଼ବ ଦେଇ ସ୍ଥାନ । ଯେତଣେ ଜଡ଼ର ପରିତ୍ରାଣ ।
ସକଳ ଗୁଣ ପରିହରି । ଆତ୍ମାରେ ଆତ୍ମା ହୋମ କରି ।
ବ୍ରହ୍ମ ନିର୍ବାଣେ ଥୋଇ ଚିତ୍ତ । ଉତ୍ତର ପଥେ ଉପଗତ ॥୦୨॥

## ଷୋଡ଼ଶ ଅଧ୍ୟାୟ

ଶରୀର ବନ୍ଧ ମୋହ କଲ୍ପେ । ଏ ଲଭ ଅପର ଅକାଳେ ।
ଅପୂର୍ବ ଦନ୍ତ ଦନେ ଛୁଟେ । ଜଳ ଯେସନେ ଛିଦ୍ର ଘଟେ ॥୧॥

ଷଡ୍‌ଗୁ ଅପୂର୍ବ ପ୍ରାଣୀଙ୍କର । ଅମୃତଦାତା ଚକ୍ରଧର ॥୧॥
ସ୍ଫୁଟବେ ମନ୍ଦ ବୁଦ୍ଧି ପ୍ରାଣୀ । ନିଜ ଅପୂର୍ବ ନ ପ୍ରମାଣି ॥୯॥

## ସପ୍ତଦଶ ଅଧ୍ୟାୟ

ବୃଶ ପ୍ରକାରେ ସ୍ଥାନ ଦେଲ । ନିତ୍ୟ ଅଧର୍ମ ପଞ୍ଚ ମେଳ ।
ଦ୍ୟୂତ ପୁଂଶ୍ଚଳୀ ମଦ୍ୟପାନ । ପ୍ରାଣୀ ମାରଣ ଯେ ବା ସ୍ଥାନ ॥୮॥
ମିଥ୍ୟା ବସଇ ଦ୍ୟୂତ ମଧ୍ୟେ । କାମ କାମିନୀ, ମଦ ମଦ୍ୟେ ।
ପ୍ରାଣି ମାରଣେ ରଜୋଗୁଣ । ସୁବର୍ଣ୍ଣ ମଧ୍ୟେ ଶତ୍ରୁଗଣ ।
ଏ ପାଞ୍ଚ ସ୍ଥାନ ତାକୁ ଦେଲ । ପଞ୍ଚ ଅଧର୍ମ ସଙ୍ଗ ମେଳ ॥୨୯॥

## ଅଷ୍ଟାଦଶ ଅଧ୍ୟାୟ

କୃଷ୍ଣ ମହିମା ସେହି ମତେ । ଯେ ଚଷୀ ଉତ୍ତପାରେ ଯେତେ ।
ତାର ବାରତା ସେ ଜାଣନ୍ତି । ଅଧିକେ ନପାରନ୍ତି କହନ୍ତି ॥୧୩॥
ଆଧାର ଲିଙ୍ଗ ନାଭି ହୃଦେ । କଣ୍ଠକମଳ ଭ୍ରୂରୁ ମଧ୍ୟେ ।
ମନ ପବନ ବ୍ରହ୍ମ ରନ୍ଧ୍ରେ । ନିବେଶି ଅଛନ୍ତି ଅନାଦେ ॥୧୪॥
ଜଳକ ତୃଣ ଭୂମି ଆଦି । ଅତିଥି ପୂଜା ଯେ ପ୍ରସିଦ୍ଧି ।
ଅର୍ଦ୍ଧ୍ୟ ସୂନୃତ ସୁଧାବାଣୀ । ନ ଲଭି କୋପେ ନୃପମଣି ॥୮॥
ଏ ନର ଲୋକ ସାଧୁ ଯେତେ । କ୍ରୋଧ ନ ବସେ ତାଙ୍କ ଚିତ୍ତେ ।
ପ୍ରାଣୀଙ୍କ ଦୋଷ ନ ଦେଖନ୍ତି । ମୁକ୍ତିରେ ହରଷ ନୁହନ୍ତି ।
ପର ଦୁଃଖରେ ଦୁଃଖୀ ହୋନ୍ତି । ସମଦୃଷ୍ଟିରେ ଅତ୍ମା ଚିନ୍ତି ।
ସେ ସାଧୁଜନଙ୍କର କଥା । କେବେ ହେଁ ନୁହଇ ଅନ୍ୟଥା ॥୨୦॥

## ଊନବିଂଶ ଅଧ୍ୟାୟ

ଆଜ ଜୀବନ ମୋର ଧନ୍ୟ । ଦେଖିଲି ତୁମ୍ଭର ବଦନ ।

# ଦ୍ୱିତୀୟ ସ୍କନ୍ଧ

## ପ୍ରଥମ ଅଧ୍ୟାୟ

ଅମୃତ ବାଣୀ ରସ ମଧ୍ୟେ । ପିବ ଜୀବନ ଅନ୍ତ ଯାଏ ॥୫୦॥

## ତୃତୀୟ ଅଧ୍ୟାୟ

ମନୁଷ୍ୟ ମଧ୍ୟେ ସାଧୁ ପ୍ରାଣୀ । ମରଣ କାଳେ ତାହା ଜାଣି ॥୧॥

## ଚତୁର୍ଥ ଅଧ୍ୟାୟ

ସେ ହରି ଅମ୍ଭ ମାୟାବଳେ । ସୃଷ୍ଟି ହଞ୍ଚିଲେ ଏ ଶପୁଳେ ॥୬॥
କିରାତ ହୂଣ ଅନ୍ଧ୍ର ଯେତେ । ପୁଲିନ୍ଦ ଚଣ୍ଡାଳ ସମେତେ ।
ଅଭୀର କଙ୍କ ଯେ ଯବନ । ଏ ଆଦି ଯେତେ ଅନ୍ତ୍ୟ ଜନ ॥୧୮॥
ଯେ ଲକ୍ଷ୍ମୀପତି ଯଜ୍ଞପତି । ଯେ ପ୍ରଜାପତି ଜ୍ଞାନପତି ।
ଯେ ଲୋକପତି ଧରାପତି । ଯାଦବ ବଂଶ ପତିଗତି ।
ସାଧକ ଜନଙ୍କର ଗତି । ପ୍ରସନ୍ନ ହୁଅନ୍ତୁ ମୋ ପ୍ରତି ॥୨୦॥
ସଗୁଣ ନିର୍ଗୁଣ ଚିହ୍ନରେ । ସେବନ୍ତି ଯେଝା ଅନୁସାରେ ।

## ନବମ ଅଧ୍ୟାୟ

ଶ୍ୟାମସୁନ୍ଦର ତନୁ ବର୍ଣ୍ଣ । ଅରୁଣ ପଙ୍କଜଲୋଚନ ।
ପୀତବସନ ପରିଧାନ । ସୁରୁଚି ସୁନ୍ଦର ବଦନ ।
ମଣିପଦକ କଣ୍ଠଦେଶେ । କାମଗଞ୍ଜନ ନିଜ ବେଶେ ॥୧୧॥
ସୃଷ୍ଟି ସଙ୍କଳ୍ପ ମୋର ଇଚ୍ଛା । ତୁ ନାଥ କର ସୃଷ୍ଟି ଧିଷା ॥୨୬॥
ସୃଷ୍ଟିର ଅଗ୍ରେ ମୁହିଁ ଏକ । ମୋ ତହୁଁ ପ୍ରକାଶେ ଅନେକ ।

ସତ ଅସତ ପର ମୂର୍ତ୍ତି । ଯେ ଅବଶେଷ ଶେଷ ତତ୍ତ୍ୱ ।
ଏଣୁ ଏ ଆଦ୍ୟ ମଧ୍ୟ ଅନ୍ତେ । ମୋ ଛଡ଼ୁଁ ଅନ୍ୟ କେ ଜଗତେ ।୩୨।

# ତୃତୀୟ ସ୍କନ୍ଧ

## ଷଷ୍ଠ ଅଧ୍ୟାୟ

ବ୍ରାହ୍ମଣ ଜନ୍ମିଲ ମୁଖରୁ । ଯେ ଗୁରୁ ବର୍ଣ୍ଣଙ୍କର ଗୁରୁ ॥୩୧॥
ସଂସାରେ ମୂଢ ଯେଉଁ ଜନ । ସେ ବା ଈଶ୍ୱରେ ଦୃଢ଼ ମନ ।
ଏ ବେନ ସଂସାରରେ ସୁଖୀ । ମଝି ମଝିକା ଅତି ଦୁଃଖୀ ॥୩୫॥

## ଚବିଶ ଅଧ୍ୟାୟ

ମୁନିର ଧର୍ମଟି ଏମନ୍ତ । ଯେ ବାକ୍ୟ ବୋଲେ ପିତାମାତ ।
ଆଦରେ ସର୍ବଥା କରିବ । ତେଣେ ସନ୍ତୋଷ ସର୍ବଦେବ ।
ତାହାର ଇହ ପରଲୋକେ । ସକଳ କାଳ ଯାଏ ସୁଖେ ॥୧୩॥

# ଚତୁର୍ଥ ସ୍କନ୍ଧ

## ତୃତୀୟ ଅଧ୍ୟାୟ

ପିତା ଭର୍ତ୍ତା ଗୁରୁ ସଦନେ । ଯୋଗାଇ ଦିବା ଅବରଣେ ॥
ଯେ ପ୍ରାଣୀ ଅଭ୍ୟାଗତ ଦେଖି । ବକ୍ରବଦନେ ବୁଜେ ଆଖି ।
ବନ୍ଧୁ ହେଲେ ହେ ଜାଣ ଭୁକ୍ତ । ତା ଗୃହେ ଦିବା ନ ଯୋଗାଇ ॥
ନରକେ ଅସହଣି ଭାବ । ଅସାଧୁଜନଙ୍କ ସ୍ୱଭାବ ।
ସାଧୁଙ୍କ ସୁପୁଣ୍ୟ ସମ୍ପଦ । ଦେଖି ବହନ୍ତି ମନେ ଖେଦ ।
ହିଂସନ୍ତି ତାଙ୍କୁ ଅକାରଣେ । ହରିଙ୍କି ଯେତେକ ପୁଣ୍ୟ ଜନେ ॥୨୧॥

## ଅଷ୍ଟମ ଅଧ୍ୟାୟ

ବନ୍ଧୁର ଆଗମନ ଦେଖି । ଉଠିବ ଆସନ ଉପେକ୍ଷି ।
ଯେବେ ଆସିବ ଶତ୍ରୁ ଦୂର । ସମ୍ଭ୍ରମେ କର ନମସ୍କାର ।
ଅଭିଗମନ ମଞ୍ଜୁ ବାଣୀ । ପୂଜିବ ନିଜ ଘରେ ଆଣି ।
ଏମନ୍ତ ବେଶ୍ମରେ ସାଧବେ । ବନ୍ଧୁ ପ୍ରକନ୍ତ ବନ୍ଧୁ ଭାବେ ।
ଗୁଣ ଅଧିକେ ମୋଦ ଭାବ । ନିକୃଷ୍ଟେ ଅନୁକମ୍ପା ଦେବ ।
ସମାନ ଜନେ ମିତ୍ରପଣ । ଏହିଟି ଉତ୍ତମ ଲକ୍ଷଣ ॥୩୦॥
ଯନ୍ତ୍ରର ଭାବ ଯାର ଦେହେ । ପ୍ରାଣୀଙ୍କି ହୃଦେ ଦୟା ବହେ ।
ସମଭେ ସର୍ବଭୂତେ ଦେଖେ । ତାହାଙ୍କୁ ନାରାୟଣ ରଖେ ॥୧୦॥
ନଇଷ ଭାବେ ଯାର ମନ । ତାହାକୁ ରଖେ ଭଗବାନ ॥୧୪॥

## ଦ୍ୱାଦଶ ଅଧ୍ୟାୟ

ଗ୍ରହ ନକ୍ଷତ୍ର ତାରାଗଣେ । ଭ୍ରମନ୍ତି ମେଧି ଆକର୍ଷଣେ ॥୧୩॥

## ଚତୁର୍ଦ୍ଦଶ ଅଧ୍ୟାୟ

ମନ ବଚନ ଦେହ ଗତ । ଯେ ପ୍ରାଣୀ ଥାନ୍ତି କଳୁଷିତ ।
ଏ ବେନି ଲୋକରେ ଝଣନ୍ତି । ନ କଲେ ଜୀବନ୍ତେ ମରନ୍ତି ॥୧୦॥

## ଷୋଡ଼ଶ ଅଧ୍ୟାୟ

ଅଦୋଷୀ ଜନ କୁ ନ ଦଣ୍ଡ୍ୟ । ପୂଜ୍ୟ ହେଲେ ହେଁ ଦୋଷୀ ଦଣ୍ଡ୍ୟ ।
ଅପ୍ରତିହତ ଚଣ୍ଡ ତୋଷ । ଚେତନେ ଯେସନେ ଦାବାନଳ ॥୧୦॥

## ସପ୍ତଦଶ ଅଧ୍ୟାୟ

ସ୍ତ୍ରୀ ଶିଶୁ ପୁରୁଷ ନପୁଂସକେ । ପୀଡ଼ିତ ଯାର ତହୁଁ ଲୋକେ ।

ତାହାଙ୍କୁ ରଜା ନ ଦଣ୍ଡିଲେ । ସେ କଷ୍ଟ ରଜା ଏ ସଂସାରେ ॥
ତାର ମାରଣେ ଦୋଷ ନାହିଁ । ସଂସାରେ ଧର୍ମ କଥା ଏହି ॥୨୨ ॥

## ବିଂଶ ଅଧ୍ୟାୟ

ସାଧୁଙ୍କ ନାହିଁ ହିଂସାଭାବ । ସମେ ଦେଖନ୍ତି ସର୍ବଜୀବ ॥୩ ॥

## ଦ୍ୱାବିଂଶ ଅଧ୍ୟାୟ

ପ୍ରଜାପାଳନ ରଜା ଧର୍ମ । ପ୍ରଜା ଯେ କରେ ଶୁଭକର୍ମ ॥
ପରଲୋକରେ ଷଷ୍ଠ ଅଂଶ । ନୃପତି ଲଭଇ ଅବଶ୍ୟ ॥
ସେ ପ୍ରଭୁ ପରମ ମଙ୍ଗଳ । ଦିଅନ୍ତି ସର୍ବକର୍ମ ଫଳ ॥
ଭୂମି ଉଦକ ତୃଣାସନେ । ବଳନ୍ତୁ କୋମଳ ବଚନେ ॥
ଏ ସବେ ଯେ ବା ନ ପୂଜନ୍ତି । ସେ ବ୍ୟର୍ଥ ଜୀବନେ ବଞ୍ଚନ୍ତି ॥୧୦ ॥

## ପଞ୍ଚବିଂଶ ଅଧ୍ୟାୟ

ଏ ଭବେ ଗୃହସ୍ଥ ଆଶ୍ରମ । ରଖଇ ସର୍ବଲୋକ ଧର୍ମ ॥୪୦ ॥

## ଷଟ୍‌ବିଂଶ ଅଧ୍ୟାୟ

ଅଜ୍ଞାନେ ଧର୍ମମାର୍ଗ ହୁଡ଼ । ସେ ପଶୁ ବନ୍ଧ ଚକ୍ର ବଡ଼ି ॥
ତାହାର ମୋକ୍ଷ ନାହିଁ ଆର । ମନୁଷ୍ୟ ଜନ୍ମ ହୋଏ ଦୂର ॥୧୭ ॥

## ଊନତ୍ରିଂଶ ଅଧ୍ୟାୟ

ଶୁଣ ରାଜନ ସାବଧାନ । ସକଳ କର୍ମେ ସାକ୍ଷୀ ମନ ॥
ମନଟି ସୁଖ ଦୁଃଖଦାତା । ଏ ପାପ ପୁଣ୍ୟର କରତା ॥
ମନଠୁଁ କର୍ତ୍ତା ପରେ ନାହିଁ । ଇନ୍ଦ୍ରିୟ ଗୁଣ ଅର୍ଥ ବହି ॥
ତା ପୂର୍ବ ଶୁଭାଶୁଭ କର୍ମ । ସେ ଅନୁସାରେ ଲଭେ ଜନ୍ମ ॥

ଜେ ଦାତା କୃପଣ ଈଶ୍ୱର । ସାଧୁ ଦୁର୍ଜନ ଜେ ଜା ସ୍ୱେର ॥
ଏ ମନ କର୍ମର ଆସୂତ୍ରେ । ଭ୍ରମଇ ଦୁଃଖ ସୁଖେ ନିତ୍ୟେ ॥୨୬
ଶବଦ ଆଡ ମାତ୍ରା ପଞ୍ଚ । ଅପରେ ତ୍ରିଗୁଣ ପ୍ରପଞ୍ଚ ॥
ଦଶ ଇନ୍ଦ୍ରିୟ ପଞ୍ଚ ପ୍ରାଣ । ଯେ ମନ ବୁଦ୍ଧି ସଙ୍ଗତେଣ ॥
ଏହାକୁ ଲିଙ୍ଗ ଦେହ କହି । ଯାବତ ଚେତନା ଏ ବହି ॥
ଯେହ୍ନେ ଜଳୌକା ତୃଣେ ଥାନ୍ତି । ଏକ ଧରି ଆରେ ଗୁଡ଼ନ୍ତି ॥
ସେ ରୂପେ ଏ ଲିଙ୍ଗ ଶରୀର । ଦେହ ସମ୍ଭବ ଏ ପ୍ରକାର ॥
ଯାବତ ଅନ୍ୟ ଦେହ ନୋହେଁ । ତାବତ ଅଟୁ ପୂର୍ବ ଦେହେ ॥
ତୃଣାଦି ହୁତାଶନେ ଯେହ୍ନେ । ସ୍ପର୍ଶେ ହୋନ୍ତି ଦଗ୍‌ଧମାନେ ॥
ତେମନ୍ତେ ସ୍ତ୍ରି ଶ୍ରି ସଙ୍ଗ ଦୋଷ । ଦେଖନ୍ତେ ଜ୍ଞାନ ହେବ ଧ୍ୱଂସ ॥

# ପଞ୍ଚମ ସ୍କନ୍ଧ

## ପଞ୍ଚମ ଅଧ୍ୟାୟ

ଯେ ଜନ କ୍ରୋଧ ବିବର୍ଜିତ । ଯାହାର ସୁହୃଦ ଜଗତ ॥
ଯେ ପ୍ରାଣୀ ମୋର ପଦ୍ମପାଦେ । ମନ ଅର୍ପଇ ଅପ୍ରମାଦେ ॥
ଯେ ଜନ ଜାୟା ଗୃହ ଧନ । ତେଣୁ କ୍ଳେଶ ନାନାକର୍ମ ॥
କରଇ ନାନା ଭ୍ରମ ହୋଇ । ଯାବତ ମୋତେ ନ ଭଜଇ ॥
ଅନିତ୍ୟ ଦେହ ନିତ୍ୟ କରେ । ସେ ସାଧୁ ବୁଡଇ ସଂସାରେ ॥୪॥
ସ୍ୱକର୍ମ କରି ଏ ସଂସାରେ । ଯେ ଅର୍ପେ ମୋହର ପଦରେ ॥
ତାହାର କର୍ମ ବନ୍ଧ ମୁହିଁ । ଅକ୍ଳେଶେ ନିଶ୍ଚୟ ଛେଦଇ ॥୨୧॥

## ସପ୍ତମ ଅଧ୍ୟାୟ

ହେ ପରବ୍ରହ୍ମ ତୁ ସବତା । ନିଖିଳ କର୍ମଫଳ ଦାତା ॥
ଇଚ୍ଛା ମାତ୍ରକେ ସୃଷ୍ଟି କରୁ । ସକଳ ଜୀବେ ପ୍ରତିପାଳୁ ॥

ତୋ ତେଜେ ସର୍ବ ବୁଦ୍ଧି ସ୍ଥିରେ । ଶରଣ ଗଲି ତୋ ପଦ୍ମରେ ॥୨୪

## ଏକାଦଶ ଅଧ୍ୟାୟ

ପଣ୍ଡିତ ବୋଲିବା ତାହାରେ । ସେ (ଯେ) ଶୁଦ୍ଧ ଏ ଘୋର ସଂସାରେ
ସେ ସାଧୁ ବୋଲାଇ ସଂସାରେ । ଯେ ପ୍ରାଣୀଠାରେ ଦୟା କରେ ॥୨
ଦଣ୍ଡିବା ଶକ୍ତି ଯାର ଥାଇ । ସେ ଯେବେ କ୍ଷମା ଆଚରଇ ॥
ସାଧୁଙ୍କ ଶ୍ରେଷ୍ଠ ସେହୁ ନର । ସୁଖ ଦୁଃଖରୁ ସେ ବାହାର ॥୩॥
ସଗୁଣେ ପ୍ରାଣୀମାନଙ୍କର । ନାନା ବ୍ୟସନର ଆତୁର ॥
ନିର୍ଗୁଣ ଭାବକୁ ଯେ ଧରେ । ସେ ପ୍ରାଣୀ ଭବଜଳୁ ତରେ ॥
ଧୃତ ପ୍ରଦୀପ ପ୍ରାପ୍ତ ହୋଇ । ସଗୁଣେ ସଂସାରେ ଭ୍ରମଇ ॥୭।୮॥
ପରମ ଆତ୍ମା ଜ୍ୟୋତିର୍ମୟ । ଅନାବୃତ ସେ ସର୍ବଦେହ ॥
ସେ ନାରାୟଣ ଭଗବାନ । ବାସୁଦେବ ଆଦ୍ୟ କାରଣ ॥୧୩

## ଦ୍ୱାଦଶ ଅଧ୍ୟାୟ

ଦେଖ ଏ ଅଖିଳ ସଂସାର । ଜନ୍ମଇ ଯହିଁ ଚରାଚର ॥
ସେ ପ୍ରଭୁ ଅଖିଳ କାରଣ । ମୁନିଏ କରନ୍ତି ଗାୟନ ॥୮।୧୧॥

## ଚତୁର୍ଦ୍ଦଶ ଅଧ୍ୟାୟ

ସାଧୁ ମାନବ ଜନ୍ମସାର । ସଂସାରେ କିବା ଜନ୍ମ ଆର ॥
ଯେ ଜନ୍ମେ ହୃଷୀକେଶ ଗୁଣ । ବଦନେ କରି ଉଚ୍ଚାରଣ ॥
ଶ୍ରବଣ କରି ଯଶ ଗାଇ । ସୁସାଧୁ ସଙ୍ଗତେ ବସଇ ॥୨୧॥

## ଊନବିଂଶ ଅଧ୍ୟାୟ

ମାୟାରେ ପୃଥକ ସେ ହୋଇ । ତତ୍ତ୍ୱ ତା ବନ୍ଧୁ କେହି ନାହିଁ ॥୨୬॥

## ବିଂଶ ଅଧ୍ୟାୟ

ଯେ ବ୍ରହ୍ମ ବିଶ୍ୱରୂପ ହୋଇ । ଅଖିଳ ସୃଷ୍ଟିକି ଭିଆଇ ।
ସେ ବ୍ରହ୍ମରୂପ ଯେ ଠାକୁର । ନମଇଁ ତାହାଙ୍କ ପୟର ॥୨୯॥

## ତ୍ରୟୋବିଂଶ ଅଧ୍ୟାୟ

ନମଇଁ ଜ୍ୟୋତିର୍କମୟ । କାଳ ଅଦ୍ଭୁତ ସାର ବେଦ ॥
ସକଳ ବେଦ ସ୍ୱାମୀ ତୁମ୍ଭ । ତୋ ପାଦେ ଆନନ୍ଦେ ନମଇଁ ॥
ଗ୍ରହ ଋକ୍ଷ ଯେ ତାରଗଣ । ସର୍ବାଧିଦେବ ନାରାୟଣ ॥
ଯେ ତିନିସନ୍ଧ୍ୟା ବେଳେ ନର । ସ୍ମରଣେ କରେ ନମସ୍କାର ॥
ଅହୋରାତ୍ରର ପାପ ତାର । ଦହନ ହୁଏ ନୃପବର ॥୯॥
ଅଖିଳ ବ୍ରହ୍ମାଣ୍ଡ ଠାକୁର । ଅନାଦି ଅବ୍ୟକ୍ତ ଈଶ୍ୱର ॥
ସେ ପ୍ରଭୁ ଚରଣେ ମୋ ମତି । ଅନୁବ୍ରତରେ(ଅବିରତେ)ହେଉସ୍ଥିତି

# ଷଷ୍ଠ ସ୍କନ୍ଧ

## ପ୍ରଥମ ଅଧ୍ୟାୟ

ଯେବଣ ପ୍ରକାରେ ଭକ୍ଷକ । ତରଇ ଟକାଡ଼ା ଅନେକ ॥
ବେଗର ଗୁରୁ ଲଘୁ ଜାଣି । ନିଦାନ କଥା ପଚିମାଣି ॥
ହେମନ୍ତ ମରଣର ଆଗେ । ସଂଯତମନା ହୋଇ ବେଗେ ॥
ପାପର ନିବାରଣ ଅର୍ଥେ । କରିବ ସଦ୍ୟ ପ୍ରାୟଶ୍ଚିତ୍ତେ ॥୮॥
ସ୍ୱପଥ୍ୟ ଗ୍ରାସ ଯେତ୍କ କରେ । ତାକୁ ବ୍ୟାଧି ପୀଡ଼ା ନକରେ ॥୧୨॥
ସୂର୍ଯ୍ୟ ଚନ୍ଦ୍ର ଦିଗ ଆକାଶ । ପବନ ସନ୍ଧ୍ୟା ଅହର୍ନିଶ ॥
ଦେବ ଭୂଜଳ ଅଗ୍ନି ଧର୍ମ । ମନୁଷ୍ୟ କର୍ମର ସାକ୍ଷିଣ ॥୪୨॥
ଜ୍ଞାନ କର୍ମ ଦଶେନ୍ଦ୍ରିୟ । ମନ ଆର ପଞ୍ଚ ବିଷୟ ॥
ଏ ଷଟ ଦଶ ଲିଙ୍ଗ ଦେହେ । ଏ ଜୀବ ଭୁଞ୍ଜଇ ବିଷୟେ ॥୫୧॥

## ତୃତୀୟ ଅଧ୍ୟାୟ

ମହତଙ୍କ ଯାହା ଆଚରିବେ । ଇତରେ ତାହା ହିଁ କରିବେ ॥
ସେ ଯାହା ପ୍ରମାଣ କରିବେ । ଲୋକେ ସେ ପଥେ ପ୍ରବର୍ତ୍ତିବେ ॥୪୩॥
ଯେ ବ୍ରହ୍ମହତ୍ୟା ମଦ୍ୟପାନ । ଗୁରୁ ପତ୍ନୀ ଅଭିଗମନ ॥
ମିତ୍ର ବଞ୍ଚନେ ଅପରାଧୀ । ପିତୃ ରାଜା ସ୍ତ୍ରୀ ଗୋବଧୀ ॥
ଏ ଆଦି ପାପ ଯେ ଅପରେ । ସର୍ବ ଦୁରିତ ନଷ୍ଟ ହରେ ॥
ପ୍ରାୟଶ୍ଚିତ୍ତ ସର୍ବ ପ୍ରାଣୀଙ୍କର । ନାମ ଉଚ୍ଚାରଣ କୃଷ୍ଣର ॥୯॥
ବ୍ରତ ପ୍ରାୟଶ୍ଚିତ୍ତ ଏମାନ । ଅଧିକ ତହୁଁ ହରିନାମ ॥
ଶୁଦ୍ଧ ସତ୍ତ୍ୱଙ୍କୁ ପରକାଶେ । ପାପର ମୂଳବୀଜ ନାଶେ ॥୧୨॥
ବେଗ ଶରୀରେ ଉପଗତ । ଦେଲେ ଔଷଧ ବଳବନ୍ତ ॥
ଅଜ୍ଞାନେ ପ୍ରୟୋଗ ହୋଇଲେ । ତେମନ୍ତ ନାମ ଉଚ୍ଚାରିଲେ ॥
ତେବେ ହେ ଆମ୍ଭ ଗୁଣୁ ତାର । ସେ କି ନକରେ ଉପକାର ॥୧୯॥

## ଚତୁର୍ଥ ଅଧ୍ୟାୟ

ବାଳକ ବନ୍ଧୁ ପିତା ମାତା । ନଯୁନ ବନ୍ଧୁ ଲୋକ ପତା ॥
ଭିକ୍ଷୁକ ବନ୍ଧୁ ଗୃହଜନ । ଅଜ୍ଞର ବନ୍ଧୁ ସୁଜ୍ଞଜନ ॥
ସ୍ତ୍ରୀଙ୍କର ବନ୍ଧୁ ସ୍ୱାମୀ ନିଜ । ପ୍ରଜାର ବନ୍ଧୁ ମହାରାଜ ॥
ଜୀବର ହୃଦଗତେ ହରି । ଅଛନ୍ତି ଆତ୍ମା ରୂପ ଧରି ॥୧୨।୨୩
ପୁଂଶ୍ଚଳୀ ସଙ୍ଗେ କରି ଭୋଗ । କେବଳ ଶ୍ରମ ମାତ୍ର ଲାଭ ॥
କୃତ୍ରିମ ଭାର୍ଯ୍ୟା ଗୃହସ୍ଥ ଯେହ୍ନେ । ନରକେ ବଞ୍ଚଇ କଷଣେ ॥୧୪॥
ଭକ୍ତର ଦୁଃଖେ ଯେହ୍ନ ଦୁଃଖୀ । ସେ ପ୍ରାଣୀ ସର୍ବକାଳେ ସୁଖୀ ॥
ତାହାକୁ ପୁଣ୍ୟବନ୍ତ କହି । ଦେବଙ୍କ ସଙ୍ଗେ ସ୍ୱର୍ଗେ ଯାଇ ॥୩୨

## ସପ୍ତମ ଅଧ୍ୟାୟ

ଧର୍ମ ଧାରଣା ଯେଉଁମାନେ । ସାଧୁ ପଣ୍ଡିତ ସେତେ ଜନେ ॥
ଏହାଙ୍କୁ ଦେଖି ନ ଉଠନ୍ତି । ସେମାନେ ଧର୍ମ ନଷ୍ଟାଣନ୍ତି ॥୧୨।୧୩
ଉତ୍ତମ ପୁରୁଷଙ୍କର ଧର୍ମ । ଯେ ପିତୃଗଣ ଶୁଶ୍ରୂଷଣ
ଆଚାର୍ଯ୍ୟ ବ୍ରହ୍ମାର ମୂରତି । ପିତା ପ୍ରତ୍ୟକ୍ଷ ପ୍ରଜାପତି ॥
ଭ୍ରାତା ଯେ ମୂରତି ଇନ୍ଦ୍ରର । ମାତା ସାକ୍ଷାତେ ପୃଥ୍ୱୀର ॥
ଭଗ୍ନୀ ଯେ ଦୟାର ମୂରତି । ଧର୍ମ ମୂରତି ଯେ ଅତିଥି ॥
ଅଗ୍ନି ମୂରତି ଅଭ୍ୟାଗତ । ଆତ୍ମାର-ମୂର୍ତ୍ତି ସର୍ବଭୂତ ॥୨୯।୩୦
କାର୍ଯ୍ୟର ପ୍ରୟୋଜନ ପାଇଁ । ଜନସ୍ତୁ ପୂଜା ନିନ୍ଦା ନୋହି ॥
ବପୁସେ ହେଲେ ହେଁ କନିଷ୍ଠ । ଜ୍ଞାନରେ ଅଟ ତୁମ୍ଭେ ଜ୍ୟେଷ୍ଠ ॥୩୩
ନିନ୍ଦିତ କାର୍ଯ୍ୟ ଯୌବେନ୍ବତ୍ୟେ । କ୍ଷମା ଆରଧ ତୁମ୍ଭେ ମୋତେ ॥୩୫
ଅପଥ୍ୟ ଭୋଜନରୁ ମୋର । ଯେ ବ୍ୟାଧି ଜନ୍ମେ ଅତି ଘୋର ॥୧୮
ପାଷଣ୍ଡ ନକର ପ୍ରମାଦ । ତହୁଁ ରଖିବେ ଦେବ ବୁଦ୍ଧ ॥୧୯॥

## ନବମ ଅଧ୍ୟାୟ

ଦ୍ୱିଜ ଜଗନ୍ନାଥ ବୋଲଇ । ନାମରେ ସର୍ବସିଦ୍ଧ ହୋଇ ॥
ଯଦ୍ୟପି ଏକ ରୂପ ହୁଅ । ନାନା ରୂପକୁ ତୁମ୍ଭେ ବହ ॥୩୬॥

## ଦଶମ ଅଧ୍ୟାୟ

ଯାଚଞ୍ଚା ଶ୍ରେଷ୍ଠ ଲୋକଙ୍କର । କେବେ ହେଁ ନୋହେଁ ହତାଦର ॥୭॥
ଯାହାକୁ ରଖନ୍ତି ଈଶ୍ୱର । ଅସୁରେ କେତେକ ମାତର ॥୨୮॥
ପ୍ରବାସ ପତି ପ୍ରିୟା ଯେହ୍ନେ । ଲୋଡ଼ଇ ମନ ମୋତେ ସନେ ॥
ହେ ନାଥ ଦରଶନେ ତୋର । ହେଉ ଏ ଆଶା ପୂର୍ଣ୍ଣ କର ॥
ଭୁବନ ମଙ୍ଗଳ ଏ ବାଣୀ । ଶୁଣି ସଂସାରୁ ତରୁ ପ୍ରାଣୀ ॥

## ଦ୍ୱାଦଶ ଅଧ୍ୟାୟ

ସୁଖ ଦୁଃଖ ମୃତ୍ୟୁ ଜୀବନ । ଏ ସବୁ ଈଶ୍ୱର ଅଧୀନ ॥
ଏ ଜୀବନ ଭବ-ସମ ହୁଅ । ହର୍ଷ ବିଷାଦକୁ ନଟାଅ ॥୧୫॥
ଆତ୍ମାଟି ସାକ୍ଷୀ ବୋଲି ଜାଣ । ସେ ଯାକୁ ହୁଅଇ ପ୍ରସନ୍ନ ॥
ସଂସାରରେ ବନ୍ଧ ସେ ନୁହଇ । ସକଳ ପାପୁ ସେ ତରଇ ॥
ଅଟଳ ବ୍ରହ୍ମାଣ୍ଡର ହେତୁ । ତହିଁ ଠୋଉର ଦୃଢ଼ମତି ॥
ପରମ ବ୍ରହ୍ମ ହରି ସେହି । ତା' ତହିଁ ଯାର ଭକ୍ତି ହୋଇ ॥
ଅମୃତ ସିନ୍ଧୁରେ ସେ ଜନ । କ୍ରୀଡ଼ା କରଇ ଅନୁକ୍ଷଣ ॥
କି କାର୍ଯ୍ୟ କୂପ ଜଳେ ତାର । ସେ ସ୍ୱର୍ଗ ଭୋଗଟି ଅସାର ॥

## ତ୍ରୟୋଦଶ ଅଧ୍ୟାୟ

ମହାପୁରୁଷ ଆତ୍ମା ପର । ଅଖିଳ ଜଗତ ଈଶ୍ୱର ॥
ତତ୍ତ୍ୱ ଜାଣିଲେ ସବୁ ହୋଇ । କଳରେ ଆନ ଗତି ନାହିଁ ॥
ଯାହାର ଆତ୍ମା ଆତ୍ମବଶ । ତାହାର ବଶ ଏ ଅଶେଷ ॥
ଯାହାର ଆତ୍ମା ବଶ ହୋଇ । ସବୁର ପୂଜ୍ୟ ସେ ଅଟଇ ॥

## ଚତୁର୍ଦଶ ଅଧ୍ୟାୟ

ଯେସନେ ନଦୀ ସ୍ରୋତ ଜଳେ । ବାଲୁକା ନରହେ ନିଶ୍ଚଳେ ॥
ସଂଯୋଗ ବିୟୋଗ ହୁଅଇ । ବାଲୁକା ଭସିଯାଉ ଥାଇ ॥
ତେସନ ପ୍ରାଣୀ ଯଥାକାଳେ । ଆସଇ ଯାଇ କର୍ମ ବଳେ ॥୯॥

## ଷୋଡ଼ଶ ଅଧ୍ୟାୟ

ଜ୍ଞାନାତ୍ମାମସୁ ତୁ ଅଗ୍ରଣ । ସକାମେ (ଅକାମେ) ଯେ ତୋର ଚରଣ
ପୂଜନ୍ତି ଜନ୍ମ ତାଙ୍କ ନାହିଁ । ଉଦା ବୀଜର ହାସୁ ହୋଇ ॥୩୯॥
ପ୍ରାଣୀର ଧର୍ମ ଦର ଏହୁ । ସମ ଦରଶୀ ଯେବେ ହୋଇ ॥

### ସପ୍ତଦଶ ଅଧ୍ୟାୟ

ଏକଇ ପ୍ରଭୁ ଅବମୂଳ । ମାୟାରେ ସର୍ଜ୍ଜିଲ ସକଳ ॥

### ଅଷ୍ଟାଦଶ ଅଧ୍ୟାୟ

ଅଗସ୍ତି ପେଟେ ମେଷ ରୂପେ । ଯେ (ବାତାପି)ଲୟହୋଇଲା ସ୍ୱରୂପେ
କୃମି,ବିଷ୍ଠା ଭସ୍ମ-ସମାନେ । ଯେ ଦେହ ହୋଏ ଅବସାନେ ॥୧୫
ସେ ଦେହ,ପାଇଁ ପ୍ରାଣୀ ନାଶ । କରି ନରକେ ପଡ଼ନ୍ତି ବଶ ॥୨୫॥
ସ୍ତ୍ରୀରୂପ ଅର୍ଦ୍ଧ ଅଙ୍ଗ ନାସ୍ତି । ନର ସ୍ୱଭାବ ବଶ ସ୍ତ୍ରୀ ସ୍ତି ॥୬୦॥
ଭର୍ତ୍ତା ପ୍ରସନ୍ନେ ସ୍ତ୍ରୀଙ୍କର । ଦୁର୍ଲ୍ଲଭ ଅଛି କି ସଂସାର ॥
ସ୍ୱାମୀ ଦେବତା ନାରୀଙ୍କର । ବେଦେ କହନ୍ତି ଧର୍ମ ସାର ॥୩୯॥
ଶରତ ପଙ୍କଜ ଯେସନ । ସ୍ତ୍ରୀମାନଙ୍କର ବଦନ ॥
ବଚନ ସୁଧା ଶ୍ରବଣର । ହୃଦୟ ଯେହ୍ନେ କ୍ଷୁରଧାର ॥
ଏମନ୍ତ ସ୍ତ୍ରୀଙ୍କ ସ୍ୱଭାବ । ଏହାଙ୍କ ଚେଷ୍ଟା କେ ଜାଣିବ ॥୦୧

### ଊନବିଂଶ ଅଧ୍ୟାୟ

ପୂଜା ଉପକର ଲେହିବ । ସନ୍ତୋଷେ ଅଚମନ ଦେବ ॥୧୫॥

## ସପ୍ତମ ସ୍କନ୍ଧ

### ତ୍ରୟୋଦଶ ଅଧ୍ୟାୟ

ଏବେ କହିବା ଯତି ଧର୍ମ । ସୁଜ୍ଞବେ ଅବଧୂତ କର୍ମ ॥
ଗ୍ରାମେ ବଞ୍ଚିବ ଏକ ଦିନ । ଦ୍ୱିଦିନ ନ ରହିବ ପୁଣ ॥
ଅଶାସ୍ତ୍ରେ ନ କରିବ ରତି । ଜୀବିକା ଜ୍ୟୋତିଷ ପ୍ରଭୃତି ॥
ଅମ୍ଭାରି,ଷ୍ଟି ଯେ ଇଚ୍ଛନ୍ତି । ମହାନ୍ତ ପୂଜିଲେ ଭଜନ୍ତି ॥

### ଚତୁର୍ଦ୍ଦଶ ଅଧ୍ୟାୟ

ଯେ ପ୍ରାଣୀ ପରେ ହିଂସା କରେ । ଦେବତା ପୂଜ ଯେ ନୀତରେ ॥

### ପଞ୍ଚଦଶ ଅଧ୍ୟାୟ

ଗୁରୁ ସେବକେ ସବୁ ଦୁଃଖେ । ପ୍ରାଣୀ ତରନ୍ତ ଆତ୍ମା ସୁଖେ ॥
ଯେ ଗୁରୁ ଜ୍ଞାନ ଦାନ ଦେଇ । ତାଙ୍କୁ ଯେ ମନୁଷ୍ୟେ ଗଣଇ ॥
ସେ ଯେତେ କର୍ମ କଲେ ଦେହେ । ନିଷ୍ଫଳ ହସ୍ତି-ସ୍ନାନ ପ୍ରାୟେ ॥

## ଅଷ୍ଟମ ସ୍କନ୍ଧ

### ପଞ୍ଚମ ଅଧ୍ୟାୟ

ଯେ ବଇକୁଣ୍ଠ ଗୋପ୍ୟ ସ୍ଥାନ । ପରମ ଆତ୍ମା ପରଧାମ ॥
ଯହିଁକି ଜୀବ ଆତ୍ମା ଗଲେ । ପୁଣି ନ ଫେରେ ଶପୁକଳ ॥

### ଷଷ୍ଠ ଅଧ୍ୟାୟ

( ଶ୍ରୀ ଭଗବାନୁବାଚ )

ଅସୁରଙ୍କର ସଙ୍ଗେ ଯାଇ । ବସ ବିଶ୍ୱାସ ଗ୍ରବ ହୋଇ ॥
ଯାବତ ସିଦ୍ଧ ନୋହେ କାର୍ଯ୍ୟ । ତାବତ ମିତ୍ର ଗ୍ରବେ ଭଜ ॥
ଅହି ମୂଷିକ କରି ସନ୍ଧି । ଯେମନ୍ତେ ଆତ୍ମ କାର୍ଯ୍ୟ ସାଧି ॥

### ସପ୍ତମ ଅଧ୍ୟାୟ

ଯେ କରେ ଆନ ଉପକାର । ସେ ଧର୍ମ ଜ୍ଞାନୀଙ୍କର ସାର ॥
ଦୁଃଖୀଁ ସେ ପରଧାଣ କରେ । ସର୍ବଂ ପ୍ରାଣୀଙ୍କ ଉଦ୍ଧରେ ॥
ତା ଜନ୍ମ ଧନ୍ୟ ଏ ସଂସାରେ । ଯେ ରହେ ପର ଉପକାରେ ॥
ସାଧୁ ଜନଙ୍କର ଏ ଭାବ । କେବେ ହେଁ ଧର୍ମ ନ ଛାଡ଼ନ୍ତ ॥

## ନବମ ଅଧ୍ୟାୟ

ସର୍ପକୁ କ୍ଷୀର ଯେ ପିଆନ୍ତି । ସର୍ପର ଘାତେ ସେ ମରନ୍ତି ॥
ଜାଣ ସ୍ୱଭାବ ନୃଶଂସକ । ଅସୁରେ ନୁହନ୍ତି ବିବେକ ॥

## ଷୋଡ଼ଶ ଅଧ୍ୟାୟ

ଦ୍ୱିଶିର ତ୍ରିଚରଣ ଭୁଜି । ଚତୁର ଶୃଙ୍ଗ ତନୁ ଦେଖି ॥
ସପତ ହସ୍ତ ଯଜ୍ଞରୂପୀ । ଆତ୍ମା ତୋ ତିନ ବେଦେ ବ୍ୟାପୀ ॥

## ଅଷ୍ଟାଦଶ ଅଧ୍ୟାୟ

ସାବିତ୍ରୀ ମନ୍ତ୍ର କର୍ଣ୍ଣେ କହେ । ଯେଣେ ସବିତା ତେଜ ବହେ ॥
ନର୍ମଦା ନଦୀର ଉତ୍ତରେ । ଗିରି ପର୍ବତ ବନ ଘୋରେ ॥
ବଳିକ ଯଜମାନେ ବସି । ବିପ୍ରେ ଭୃଗୁଙ୍କୁ ଆଶ୍ରେ କରି ॥

## ବିଂଶ ଅଧ୍ୟାୟ

ସତ୍ୟ ଉପରେ ଧର୍ମ ନାହିଁ । ଏ କଥା ଭୂମି ଅଛି କହି ॥
ସର୍ବ ଅପ୍ରାଧ ସହିପାରେ । ମିଥ୍ୟାର ଭରେ ମୂର୍ଚ୍ଛି ଡରେ ॥

## ଏକବିଂଶ ଅଧ୍ୟାୟ

ଗଙ୍ଗା ଯେ କମଣ୍ଡଳେ ଥିଲା । ବ୍ରହ୍ମା ବିଷ୍ଣୁ ପାଦେ ଢାଳିଲା ॥
ଶୁଚି ପବିତ୍ର ଜଳବଶି । ଚରଣ ନଖ କୋଣେ ପଶି ॥

## ଦ୍ୱାବିଂଶ ଅଧ୍ୟାୟ

ତୋ ଅନୁଗ୍ରହ ଯାରେ ହୋଏ । ସେ ପ୍ରାଣୀ ସର୍ବ ଦୁଃଖ ସହେ ॥
ଜନ୍ମ କର୍ମ ବୟସ ରୂପ । ବିଦ୍ୟା ଐଶ୍ୱର୍ଯ୍ୟ ଧନାଧିପ ॥
ଏ ଭବେ ଗର୍ବ ଯାର ନାହିଁ । ମୋହର ଅନୁଗ୍ରହ ତହିଁ ॥

# ନବମ ସ୍କନ୍ଧ

## ଅଷ୍ଟାଦଶ ଅଧ୍ୟାୟ

ଏ ଦେହେ ଶୁଣ ନର ଗଣ । କେ ଶୁଝିପାରେ ପିତୃ ଋଣ ॥
ପିତାର ମନ ଜାଣି କରେ । ଉତ୍ତମ ପୁତ୍ର ସେ ବେଦରେ ॥
ଶ୍ରଦ୍ଧାରେ ଆଜ୍ଞା ଯେ ପାଳଇ । ମଧ୍ୟମ ପୁତ୍ର ସେ ବୋଲାଇ ॥
ଶ୍ରଦ୍ଧାବିହୀନେ ଯେଉଁ ପାଳେ ଅଧମ ପୁତ୍ର ସେ ଶପୁବେଳ ॥
ପିତାକୁ ଲଙ୍ଘେ ଯେ ଅଜ୍ଞାନ । ସେ ପିତା ମଳମୂତ୍ର ଜାଣ ॥୫୪॥

# ଦଶମ ସ୍କନ୍ଧ

## ତୃତୀୟ ଅଧ୍ୟାୟ

ତୋହର ନାମ ନାବ କରି । ହେଲେ ତରନ୍ତି ଭବବାରି ॥୩୦॥

## ଷଷ୍ଠ ଅଧ୍ୟାୟ

ଜୀବନ୍ତେ ଏକୁଆର ସଖା । ମରଣେ ପରଲୋକେ ଦେଖା ॥
ଏମନ୍ତେ ମିତ୍ରର ସ୍ୱଭାବ । ଆନନ୍ଦେ କହେ ବସୁଦେବ ॥୨୮॥
ନରକେ ଚିନ୍ତ ନରହରି । ନ ମର ଶୂନ୍ୟ କଳ କରି ॥୩[illegible]॥

## ଦଶମ ଅଧ୍ୟାୟ

ଅଣ୍ଟାରେ ଯୋଖିଲକ ନେଇ । ବେଣ ଅଙ୍ଗୁଳ ନ ଅଣ୍ଟଇ ॥୧୫॥

## ଏକାଦଶ ଅଧ୍ୟାୟ

ପର ରମଣୀ ଯେଉଁ ହରେ । ଯେ ପ୍ରାଣୀ ମଦ୍ୟପାନ କରେ ॥
ଜୁଆ ଖେଳନ୍ତି ହେଳ ହୋଇ । ସ୍ନେହ କରନ୍ତି ଲୋଭ ବନ୍ଧୁ ॥

ଏକ ଅନେକ ହିଂସା ବନ୍ତି । ନରକେ ପଡୁଥାନ୍ତି ଯାଇଁ ॥
ମାଂସ ଭକ୍ଷଣେ ପଶୁ ମାରେ । ଯେ ଦୟା ଧର୍ମ ନ ବସ୍ତରେ ॥
ଦେହକୁ ବୋଲନ୍ତି ମୋହର । ପାପକୁ ନାହିଁ ଯାର ଡର ॥
ଅଜ୍ଞାନ ମୋହେ ହୋନ୍ତି ମତ୍ତ । ନରକେ ପଡ଼ନ୍ତି ଭୁରତ ॥୮,୯॥
କଣ୍ଠା ନ ବହେ ଯା ଚରଣ । ସେ କି ଜାଣଇ ସେ କଷଣ ॥୧୪॥

## ପଞ୍ଚବିଂଶ ଅଧ୍ୟାୟ

ସମଦରଶୀ ଯାର ଚିତ୍ତ । ତାହାର ନାହିଁ ଶତ୍ରୁ ମିତ୍ର ॥୫॥
କର୍ମଟି ସୁଖଦୁଃଖ ଦାତା । ଜଣି ସଂସାରେ ବଳବନ୍ତା ॥୧୪॥

## ଷଡ଼୍ବିଂଶ ଅଧ୍ୟାୟ

ମଧୁସୂଦନ ଚକ୍ରଧର । ଅନାଦି ଧର୍ମ ନିରାକାର ॥୯॥

## ତ୍ରିଂଶ ଅଧ୍ୟାୟ

ଅନଳ ଦେଖିଣ ପତଙ୍ଗ । ଯେସନ୍ତେ ଧାମନ୍ତି ହୃଦବେଗ ॥୧୬॥
ପୂର୍ବ ଅର୍ଜିଲ୍ଲ କର୍ମଲଇ । ଯେ ଯାହା ସ୍ୱାମୀ ରୋ ମିଳଇ ।୨୫
ବିଧବା ହୋନ୍ତି ଜନ୍ମ ସାତ । ଯେ ନାରୀ ସ୍ୱାମୀ ଅଭକତ ॥୨୬॥

## ତ୍ରିଚତ୍ୱାରିଂଶ ଅଧ୍ୟାୟ

ତୁ ନାଥ ସର୍ବଦେବ ମଧ୍ୟେ । ସର୍ବେ ଭଜନ୍ତି ତୋର ପାଏ ॥
ସର୍ବ ଦେବତା ପୂଜା ଯେତେ । ଭଜନ ତୋର ପାଦ ଗତେ ॥୧୦॥

## ସପ୍ତଚତ୍ୱାରିଂଶ ଅଧ୍ୟାୟ

ଅଧର୍ମ କୃତ ସଭା ଯହିଁ । ପଣ୍ଡିତେ ନ ବସିବେ ତହିଁ ॥୧୦॥
ଜାଣି ନଜାଣି ପକ୍ଷ ବହି । ନରକେ ପଡନ୍ତି ସେ ଯାଇ ॥୧୦॥

ସଂସାରେ ଧର୍ମରୂପ ହୋଇ । ଭବ ଅଭବ ସେ ହେନଇ ॥୪୭॥
ମଞ୍ଜାରୁ ପଡ଼ ମାମୁଁ ମଲ । ମୋତେ ଗୋ ଦଇବ ରଖିଲ ॥୪୯
ପଥିକ ପଥଶ୍ରମ ହାଇ । ବସନ୍ତି ବୃକ୍ଷ ତଳେ ଯାଇ ॥
ଶ୍ରମ ଥାଇଲେ ଯେଝା ମତେ । ଚଳନ୍ତି ବୃକ୍ଷ ଥାଇ ପଥେ ॥
ତେମନ୍ତ ପ୍ରାପ୍ତ ଜନ୍ତୁ ମିଳି । ମାୟା ସଂସାରେ ବସ୍ତୁ କେଳି ।୪୯

## ଅଷ୍ଟଚତ୍ୱାରିଂଶ ଅଧ୍ୟାୟ

ତାତ ଜନନୀ ଉପକାର । ଶୁଣି ପାଣ୍ଡବ ଦେ କୁମର ॥୨॥
ମାତାପିତାଙ୍କ ବୃଦ୍ଧ କାଳେ । ନିଜ ଭାରିଜା ଶିଶୁ ହେଲେ ॥
ଗୋରୁ ବ୍ରାହ୍ମଣ ଗୁରୁଜନ । ଏହାଙ୍କୁ ନଦେଇ ଭୋଜନ ॥
ଯେ ପ୍ରାଣୀ ଅମ୍ଭାକୁ ତୋଷନ୍ତି । ଜୀବନ ଥାଉଁ ସେ ମରନ୍ତି ॥୨॥

## ଅଷ୍ଟଷଷ୍ଠିତମ ଅଧ୍ୟାୟ

ତୁ ଅମ୍ଭା ରୂପେ ସବ ଦେହେ । ତୋତେ ଦେଖନ୍ତି ଶୂନ୍ୟମୟେ ॥[illegible]॥
ସୃଷ୍ଟି ପାଳନ ସଂହାରଣ । ତୋହର ଆଜ୍ଞା ପରମାଣ ॥
ଆଦ୍ୟ ପୁରୁଷ ଏକ ତୁହି । ଦିଶୁ ଭବ ତୋର ନାହିଁ ॥
ଜ୍ଞାନପ୍ରକାଶ ଶୁଦ୍ଧ ଜ୍ୟୋତି । ଦେହୁ ଅଦେହୁ ତୁ ଶ୍ରୀପତି ॥[illegible]॥

## ଊନସପ୍ତତିତମ ଅଧ୍ୟାୟ

ବିଷ ଭକ୍ଷିଲେ ପ୍ରାଣୀ ମରେ । ବ୍ରହ୍ମସ୍ୱ ବଂଶ ନାଶ କରେ ॥୨୪॥
ମୋହର ବଂଶେ ଯେତେ ଜନ । ସ୍ୱପ୍ନେ ନ କର ଅପମାନ ॥
ବ୍ରାହ୍ମଣେ କଲେ ଅପରାଧ । ବେଗେ ବନ୍ଦିବ ତାଙ୍କ ପାଦ ॥
ମାରନ୍ତେ କୋପନ୍ତେ ସହିବ । କେବେ ହେଁ କୋପ ନବହିବ ।୪୨।

## ଚତୁଃସପ୍ତତିତମ ଅଧ୍ୟାୟ

ଗୋବଧ ସନ୍ଧ୍ୟା ଉପାସନେ । ଗାୟତ୍ରୀ ଜପନ୍ତୁ ମଉନେ ॥୭୫॥

## ଦ୍ୱାଶୀତିତମ ଅଧ୍ୟାୟ

ଆତ୍ମ ପ୍ରଶଂସା ଯେ କରନ୍ତି । ସେ ପ୍ରାଣୀ ନରକେ ପଡ଼ନ୍ତି ॥୧୯॥

## ଷଡ଼ାଶୀତିତମ ଅଧ୍ୟାୟ

ଯେ ଆଦିଗୁରୁ ଜନ୍ମକର୍ତ୍ତା । ତହୁଁ ଅଧିକ ବିଦ୍ୟାଦାତା ॥
ତା ତହୁଁ ଶ୍ରେଷ୍ଠ ଜ୍ଞାନଗୁରୁ । ମନ୍ତ୍ରମା କେ ବା ଅନ୍ୟକରୁ ॥
ଆଶ୍ରମୀ ଜନ କାମଦାତା । ମୁଁ ଯେଣୁ ଜ୍ଞାନଗୁରୁ କର୍ତ୍ତା ॥୩୨॥
ବନ୍ଧୁ ସୁହୃଦ ଗୃହଗତେ । ଯେ ଦ୍ୱାଶୀ ଗମେ ଶୂନ୍ୟ ହସ୍ତେ ॥
ସବ ନରକେ ବେନ ମଧ୍ୟେ । ନନ୍ଦନ୍ତି ଶାସ୍ତ୍ର ଅନୁବାଦେ ॥୧୩॥

## ନବତିତମ ଅଧ୍ୟାୟ

ମାଟି ପାଷାଣ ଧାତୁ ଖଣ୍ଡ । ଏଣେ ନିର୍ମିତ ଦେବପିଣ୍ଡ ॥
ତହିଁ ଯାହାର ପୂଜାବିଧି । ଜଳେ ଯାହାର ତୀର୍ଥ ବୁଦ୍ଧି ॥
ସାଧବେ ନକରେ ଆଦର । ତାହାକୁ ବୋଲନ୍ତି ଗୋଖର ।୧୩॥
ନିକଟେ ଥିଲେ ଅନାଦର । ଏହିଟି ସଂସାର ବେଭାର ॥
ଗଙ୍ଗା ନିକଟେ ଯେତେ ଜନେ । ଅନ୍ତ ପରତେ ଅପମାନେ ॥
ନିର୍ମଳ ଧନେ ଯଜ୍ଞ କଲେ । ଦେବତା ଋଣ ଶୁଝେ ଭଲେ ॥
ବିଦ୍ୟା ପଠନ କଲେ ଜାଣ । ନିଶ୍ଚେ ଶୁଝନ୍ତି ଋଷି ଋଣ ॥
ପୁଅ ପଣ୍ଡିତ ଜାତ କଲେ । ପିତୃଙ୍କ ଋଣ ଶୁଝେ ଭଲେ ।୩୯॥

## ତ୍ରିନବତିତମ ଅଧ୍ୟାୟ

ଗୁରୁ ସହାୟ ଯେ ନକରି । ସାଧନା କ୍ରମେ ଯାନ୍ତି ମରି ॥

# ଏକାଦଶ ସ୍କନ୍ଧ

## ଦ୍ୱିତୀୟ ଅଧ୍ୟାୟ

କ୍ଷଣେ ନିର୍ମିତ ନବେ ଲେଶେ । ଯେ ବସେ ସାଧୁଜନ ପାଶେ ॥
ତତ୍ତ୍ୱେ ତରଇ କୃଷ୍ଣ ଭାବ । ତାହାକୁ ବୋଲି ନିଧି ଲାଭ ।୩୦॥
ବେଦବଚନ ଧର୍ମଶାସ୍ତ୍ର । ଏ ବେନି ଈଶ୍ୱରଙ୍କର ନେତ୍ର ॥୩୨॥
ଦୁର୍ଗମ ପଥ ଏ ଭଜନ । ଭୟେ ତ୍ୟଜିଲେ ଯୋଗୀଜନ ॥୩୯॥
ଅମୃତ ଈନପୁ ବଚନ । ଜନ୍ତୁ ତୋଷିବ ପ୍ରାଣୀ ମନ ॥୪୧॥

## ତୃତୀୟ ଅଧ୍ୟାୟ

କୃଷ୍ଣ ଭକତ ଏ ସଂସାରେ । ପ୍ରଚରେ ତ୍ରିବିଧ ପ୍ରକାରେ ॥
ଉତ୍ତମ ମଧ୍ୟମ ପ୍ରାକୃତ । ଯାହାର ଲକ୍ଷଣ ଯେମନ୍ତ ॥
ସକଳ ଦେହେ ନାରାୟଣ । ବସନ୍ତି ଅନାଦି କାରଣ ॥୪୫॥

## ଚତୁର୍ଥ ଅଧ୍ୟାୟ

ଦୁଃଖେ ସଞ୍ଚିତ ଯେତେ ଧନ । ସେ ନୋହେ ସୁଖେ ପ୍ରୟୋଜନ ।୨୦
ପରମ ଶାସ୍ତ୍ର ଭାଗବତ । ଅଭ୍ୟାସ କରୁଥିବ ନିତ୍ୟ ॥
ଯେ ଅନ୍ୟ ଶାସ୍ତ୍ରେ ଗୁଣଦୋଷ । ମୁଖେ ନ କରିବ ପ୍ରକାଶ ॥୨୬॥
ସତ୍ୟ କହିବ ନିତ୍ୟ ଭୃତ୍ୟେ । କେବେ ହେଁ ନଥିବ ପାଷଣ୍ଡେ॥୨୭॥
ତୋର ଚରଣେ ଯେ ସେବନ୍ତି । ଦେବେ ତାହାଙ୍କୁ ବନ୍ଧୁ ଚିନ୍ତି ॥

## ପଞ୍ଚମ ଅଧ୍ୟାୟ

ସମସ୍ତେ ହୋଇ ଏକମୁଖ । ଡାକିଲେ ନାରାୟଣ ରଖ ॥୧୯॥
ପ୍ରବୋଧ ବୁଦ୍ଧ ଅବତାରେ । ଜ୍ଞାନ ବିସ୍ତାରେ ଏ ସଂସାରେ ॥୨୨

## ଷଷ୍ଠ ଅଧ୍ୟାୟ

ଧନ ଅର୍ଜନେ ଧର୍ମକର । ଧର୍ମେ ପ୍ରାପତ ନରହର ॥୧୨॥
କେବଳ ଦେବତା ବିଶ୍ୱାସେ । ନଜାଣି ଯଜ୍ଞେ ପଶୁ ହିଂସେ

ସୁଖାନୁଭବେ ପ୍ରାଣୀ ମାତ୍ରେ । କେବଳ ବସ୍ତୁ ଦ୍ରୋହ କରେ ॥୧୫॥
ଯୁଗକୁ ଯୁଗ ଏହ୍ନ ମତେ । ପରମାନନ୍ଦ ଏ ଜଗତେ ॥
ଧରଣୀ ମଧ୍ୟେ ଅବତରି । ଭ୍ରମଇ ନାନା ରୂପଧରି ॥୩୪॥

## ସପ୍ତମ ଅଧ୍ୟାୟ

ଭବଜଳଧି ସୁଖ ନାବ । ତୋର ଚରଣ ପଦ୍ମ ନାଭ ॥୨॥
ଧନ କାର୍ପଣ୍ୟ ସେବା ଫଳେ । ଜବା ଅସାଧ ମଧ୍ୟତଳେ ॥୩୬॥
ଦାନେ ସକଳ ପାପହରି । ନାବେ ଯେସନେ ସିନ୍ଧୁ ତରି ॥୩୮॥

## ଅଷ୍ଟମ ଅଧ୍ୟାୟ

ଅମ୍ଭ କୌଶଳେ ସର୍ବ ସିଦ୍ଧି । ତରଇ ସଂସାର ଜଳଧି ॥୨୦॥
ଦୁଃଖେ ନ ସ୍ମୃତ ନିଜ ପନ୍ଥ । ଚଞ୍ଚଳ ନ କରଇ ଚିତ୍ତ ॥୩୭॥
ଧନ୍ୟ ଜୀବନ ଏ ଜଗତେ । ଯେ ପ୍ରାଣ ଧରେ ପରସ୍ୱତେ ॥୩୮॥

## ନବମ ଅଧ୍ୟାୟ

ଅନ୍ତରେ ଭଲମନ୍ଦ ନାହିଁ । ଯେ ସ୍ଥାନେ ଯେମନ୍ତ ମିଳଇ ॥୩॥
ଜନ୍ତୁଙ୍କୁ ଧର୍ମ ଇନ୍ଦ୍ରଗଣ । ହେଲେ ତ କର୍ଣ୍ଣିପାତରେ ଜନ ॥୨୦॥
ମର୍ତ୍ତ୍ୟମଣ୍ଡଳେ ଜନ୍ମ ହୋଇ । ଦେବତା ହୋଇଲେ ମରଇ ॥୩୫॥
ନିଷ୍କାମ ଜନ୍ମେ ଯା ଶରୀରେ । ଆତ୍ମାକୁ ଆପଣେ ଉଦ୍ଧରେ ॥୫୧॥
ପରମ ସୁଖ ବଇରାଗ । ଆଶା ପରମ ଦୁଃଖ ଯୋଗ ॥୬୩॥

## ଦଶମ ଅଧ୍ୟାୟ

ଯେତେ ଏ ଦ୍ରବ୍ୟ ପରିଗ୍ରହ । ସର୍ବ ତୁ ଜାଣ ଦୁଃଖମୟ ॥୧॥
ଯହିଁ ଅନେକ ଲୋକ ମିଳ । ଅବଶ୍ୟ ଉପୁଜଇ କଳି ॥୧୦॥
ଯାବତ ନ ପୂରେ ଉଦର । ତାବତ ଜ୍ଞାନ କାହିଁ ଆର ॥
ମନୁଷ୍ୟ ଦେହେ ଦିବ୍ୟଜ୍ଞାନ । ଦେଖି ସନ୍ତୋଷ ଭଗବାନ ॥୨୮॥
ଏ ଜୀବ ବନ୍ଦୀ କର୍ମ ପାଶେ । ସାଧୁଙ୍କ ବନ୍ଧନ ଉଶ୍ବାସେ ॥୪୦॥

## ଏକାଦଶ ଅଧ୍ୟାୟ

ଜ୍ଞାନ ଅଭ୍ୟାସି ଅନ୍ତରେ । ଚଞ୍ଚଳ ନକରିବ ଚିତ୍ତ ॥
ସମତା ଦୃଷ୍ଟି, ସତ୍ୟ ଭାଷା । ଏଣେ କରିବ ନିତ୍ୟ ଆଶା ॥୭॥

## ଦ୍ୱାଦଶ ଅଧ୍ୟାୟ

ଏକଇ ବୃକ୍ଷେ ହଂସ ଦୁଇ । ବସନ୍ତି ପ୍ରିୟ ଭାବ ବହି ॥୩॥
ସର୍ବ ବିଷୟ ଉରବଣ । କେବେହେଁ ନୋହିବ ବିଶ୍ୱାସ ॥୧୧
ସାଧୁଙ୍କ ଶରଣ ଲକ୍ଷଣ । ଉଦ୍ଧବ ସାବଧାନେ ଶୁଣ ॥୨୮॥
ଯେ ପୁଣ୍ୟ ଆଚରଣ କରିବ । କେବେହେଁ ପରେ ନକହିବ ॥୨୯

## ତ୍ରୟୋଦଶ ଅଧ୍ୟାୟ

ଉଦ୍ଧବ କହୁଁ ତୋ ଅଗ୍ରତେ । ସତ୍ସଙ୍ଗେ କରଗଲେ ଯେତେ ॥୬॥

## ଷୋଡଶ ଅଧ୍ୟାୟ

ମୁଁ ଯେ ସକଳ ସିଦ୍ଧି ଦାତା । ଆତ୍ମାର ଗତି ପିତାମାତା ॥୩୭॥

## ସପ୍ତଦଶ ଅଧ୍ୟାୟ

ଭୂତମାନଙ୍କ ମଧ୍ୟେ ମୁହିଁ । ଅହିଂସା ବୋଲି ଜାଣ ତୁହି ॥୨୨॥

## ଅଷ୍ଟାଦଶ ଅଧ୍ୟାୟ

ଓଁକାର ରୂପେ ଥିଲା ବେଦ । କେହି ନଜାଣେ ତାର ଭେଦ ॥
ଉତ୍ତମ ସଙ୍ଗେ ସଙ୍ଗ ଯାର । ସେ କରେ ଉତ୍ତମ ବେଭାର ॥
ହୀନ ସଙ୍ଗରେ ହୀନଗତି । ହସି କହନ୍ତି ଯଦୁପତି ॥୧୦॥
ସାକ୍ଷାତେ ଗୁରୁ ଯେ ଈଶ୍ୱର । ଗୁରୁଙ୍କୁ ନମଣିବ ପର ॥
ଗୁରୁଟି ସର୍ବ ଦେବମୟେ । ମୂର୍ତ୍ତି ବସଇ ଗୁରୁ ଦେହେ ॥୨୫॥
ଅବଶ୍ୟ କର୍ତ୍ତବ୍ୟ ଏ ଜାଣ । ଗୃହରେ ପଞ୍ଚଯଜ୍ଞ ପୁଣ ॥୦୭॥

| | |
|---|---|
| ବହୁସ ତୃଷ୍ଣାପୁ ପ୍ରାପତେ | । ବନେ ଚଳିବ ତପ ଅର୍ଥେ ॥ |
| ପତ୍ନୀ ନବେଶି ପୁତ୍ର ପାଶେ | । ଅଥବା ଚଳିବ ସନ୍ନ୍ୟାସେ ॥୫୧॥ |

## ଊନବିଂଶ ଅଧ୍ୟାୟ

| | |
|---|---|
| ଦୃଷ୍ଟି ପୂତେ ପାଦନ୍ୟାସ | । ବସ୍ତ୍ର ପୂତେ ଜଳଗ୍ରାସ ॥ |
| ବାକ୍ୟ ପୂତେ କହ ସତ୍ୟ | । ମନ ପୂତେ ଥିବ ନିତ୍ୟ ॥୧୬॥ |
| ଏ ଦେହ ଥିଲେ ଜ୍ଞାନ ପାଇ | । ଜଳେ ଯେସନେ ଚନ୍ଦ୍ର ଛୁଇ ॥୩୪ |

## ବିଂଶ ଅଧ୍ୟାୟ

| | |
|---|---|
| ତୀର୍ଥ ଗମନ ଜପ ଦାନ | । ଯଜ୍ଞେ ଦେବତା ଆରାଧନ ॥ |
| ନାନା ପ୍ରକାରେ ତପକର | । ଜ୍ଞାନ କଳାକୁ ନୋହେଁ ସର ॥୯॥ |
| ଆଶା ନକର କର୍ମଫଳେ | । ଶରଣ ମୋ ପାଦକମଳେ ॥୨୨॥ |

## ଏକବିଂଶ ଅଧ୍ୟାୟ

| | |
|---|---|
| ଦୁର୍ଲ୍ଲଭ ମନୁଷ୍ୟ ଶରୀର | । ନରକ ନିସ୍ତାରଣ ଦ୍ୱାର ॥୧୨॥ |
| ଏ ଦେହ ସର୍ବସିଦ୍ଧି ହେତୁ | । ସଂସାର ସିନ୍ଧୁ ପାର ହେତୁ ॥୧୮॥ |
| ସର୍ବ ଶରୀର ମଧ୍ୟେ ସାର | । ଦୁର୍ଲ୍ଲଭ ନର କଳେବର ॥ |
| ସୁଲଭ ନାବ ରୂପ ଘାଟେ | । ବହନ ଭବସିନ୍ଧୁ ତଟେ ॥୧୯॥ |
| ଏ ନାବେ ଗୁରୁକର୍ଣ୍ଣଧାର | । ମୁହିଁ ଅନୁକୂଳ ରମାର ॥୧୭॥ |
| ଅଳପ ଅଳପ ଅଭ୍ୟାସେ | । ମନ ପବନ ସାଧିବ ସେ ॥୨୧॥ |
| ମୋର ଭକତ ଯେତେ ନର | । ଶୁଭ ଅଶୁଭ ନାହିଁ ତାର ॥୩୬॥ |

## ଦ୍ୱାବିଂଶ ଅଧ୍ୟାୟ

| | |
|---|---|
| ଅଙ୍ଗ ବଙ୍ଗ କଳିଙ୍ଗ ଦେଶ | । ସେ ନୋହେଁ ସଂସାର ବିଶେଷ ୮॥ |
| ଯେ ଯାହା କୁଳ ବ୍ୟବହାର | । ନଘଟେ ଗୁଣ ଦୋଷ ତାର ॥୧୭॥ |

## ତ୍ରୟୋବିଂଶ ଅଧ୍ୟାୟ

ମନଟି ହୋଇ କର୍ମମସ୍ତ । ନାନା ପ୍ରକାରେ ସୃଜେ ଦେହ ୩୬॥
ଜନ୍ମ ମରଣ ଦୁଇମତ । ସଂସାରେ ନୁହଁଇ ଏ ସତ୍ୟ ॥୪୨॥
ମର୍ତ୍ତ୍ୟ ମନୁଷ୍ୟ ଦେହ ବନ୍ଧ । ଦେବତା ହୋଇଲେ ମରଇ ॥୪୫
ଯେ ପ୍ରାଣୀ ସଦା ସ୍ମୃତି ସହେ । ଅଦୃଷ୍ଟ ମାନସ୍ଥିରେ ରହେ ॥
ଈଶ୍ୱରନସ୍ତୁ ଛତପରେ । ଆମ୍ଭାଙ୍କୁ ଆପଣେ ଉଦ୍ଧରେ ॥୫୮॥

## ଚତୁର୍ବିଂଶ ଅଧ୍ୟାୟ

ଦୁଃଖେ ହସ୍ତିତ ଯେତେ ଧନ । ସେ ନୋହେ ସୁଖେ ପ୍ରୟୋଜନ ॥୧୨
ତ୍ରିହ ଦେବତା କାଳ କର୍ମ । ଆତ୍ମା ନ ଅବା କେହ୍ନି ଜନ ॥
ନୁହନ୍ତି ସୁଖ ଦୁଃଖଦାତା । ମନଟି ପରମ ଭରତା ॥୩୮॥
ଆପଣା ଦନ୍ତେ ଜିହ୍ୱା ଛେଦ । କେ କାର ଅଛୁ ପ୍ରତିବାଦ ? ୫୦॥

## ସପ୍ତବିଂଶ ଅଧ୍ୟାୟ

ଅନ୍ଧକୁ ହୋଇ ଅନୁଗତ । ଅନ୍ଧ ଯେସନେ ପଡ଼େ ଗାତ ॥
ଏଣୁ ଦୁର୍ଜନ ସଙ୍ଗ ଦୋଷ । କରେ ସକଳ ଜ୍ଞାନ ଧ୍ୱଂସ ॥୩॥

## ଅଷ୍ଟାବିଂଶ ଅଧ୍ୟାୟ

ସ୍ୱ ଦତ୍ତ ପରଦତ୍ତ ବୃତ୍ତି । ଯେ ଜନ ଅଜ୍ଞାନେ ହରନ୍ତି ॥
ଦେବ ବ୍ରାହ୍ମଣ ତାହଶୋକେ । ସେ କାହୁଁ ଥିବ ନଇଲେକେ ॥
କେବଳ ନରକ ଆହାର । କରନ୍ତି ଲକ୍ଷେ ସମ୍ବତ୍ସର ॥

## ଉନତ୍ରିଂଶ ଅଧ୍ୟାୟ

ଯେସନେ ଦେହେ ବ୍ୟାଧିଶେଷ । ଅପଥ୍ୟେ ବଢ଼ଇ ବଶେଷ ॥୨୯॥

## ତ୍ରିଂଶ ଅଧ୍ୟାୟ

ସକଳ କର୍ମଫଳ ତେଜ । ସର୍ବ ସମର୍ପଣେ ମୋତେ ଭଜ ॥୧୧
ପରମ ପବିତ୍ର ଏ ବାଣୀ । ସଂସାରୁ ତରି ଏହା ଶୁଣି ॥୨୨॥

## ଏକତ୍ରିଂଶ ଅଧ୍ୟାୟ

ଯେତେ ତୁ ଦେଖ୍ ଜୀବଲୋକ । ଏ ସର୍ବ ଦୁଃଖ ମହାଶୋକ ॥୩୭॥

## ଦ୍ୱାତ୍ରିଂଶତ୍ ଅଧ୍ୟାୟ

ଭକତ କୃଷ୍ଣ ପାଦେ ଲଭ । ମନୁଷ୍ୟ ଜନ୍ମର ଏ ଲଭ ॥
ବୋଲଇ ବିପ୍ର ଜଗନ୍ନାଥ । ମୁଁ ତୁମ୍ଭ ଭୃତ୍ୟଙ୍କର ଭୃତ୍ୟ ॥୧୮॥



ସ୍ୱାଧୀନ ପ୍ରେସ୍, ବ୍ରହ୍ମପୁର

## ଗ୍ରନ୍ଥକାରଙ୍କ ଅନ୍ୟାନ୍ୟ ଗ୍ରନ୍ଥ—

(୧) ଅଳଙ୍କାର ପରିଚୟ—

ମୂଲ୍ୟ— ଟ ୦-୨୫

(୨) ଧର୍ମପଦ—(୧ମ ଭାଗ)

ସଂସ୍କୃତ,ଓଡ଼ିଆ ଅନୁବାଦ, ମୁଖବନ୍ଧ ଓ ଟିପ୍ପଣୀ ସହ
ପ୍ରକାଶକ—କଟକ ଟ୍ରେଡ଼ିଂ କୋଃ, ବାଲୁବଜାର, କଟକ

ମୂଲ୍ୟ—ଟ ୩-୭୫

(୩) ପୁଷ୍ପାଞ୍ଜଳି (କବିତା)—

ପ୍ରକାଶକ—କଟକ ପବ୍ଲିଶିଂ ହାଉସ୍ ମୂଲ୍ୟ—ଟ ୦-୭୫

(୪) ପ୍ରାଚୀନ ଓଡ଼ିଆ ଅଭିଲେଖ—

ପ୍ରକାଶକ—ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର ମୂଲ୍ୟ—ଟ ୦-୭୫

(୫) ସଂସ୍କୃତ ଓ ସାହିତ୍ୟ (୧ମ ଓ ୨ୟ ଭାଗ)

ପ୍ରକାଶକ—ବାଣୀଭଣ୍ଡାର, କଟକ ମୂଲ୍ୟ—ଟ ୪-୦୦

(୬) ବନ୍ଦନା (କବିତା)—

ପ୍ରକାଶକ—ଜଗନ୍ନାଥ କମ୍ପାନୀ, ବାଲୁବଜାର, କଟକ

ମୂଲ୍ୟ— ଟ ୦-୭୫

(୭) ଓଡ଼ିଶାର ସଂସ୍କୃତ ସାହିତ୍ୟ (ମୁଦ୍ରଣାଧୀନ)—

ପ୍ରକାଶକ—ଅ.ଲୋକ ସାହିତ୍ୟ ପ୍ରତିଷ୍ଠାନ, କଟକ

(୮) ଓଡ଼ିଆ ଭାଷା ଓ ଲିପିର ବିବର୍ତ୍ତନ—

ପ୍ରକାଶକ—ଉତ୍କଳ ବିଶ୍ୱବିଦ୍ୟାଳୟ (୧୯୬୨) ମୂଲ୍ୟ—ଟ ୨୫-୦୦

(୯) କୁମାର ସମ୍ଭବମ୍—(ସଂସ୍କୃତ) ୫ମ ସର୍ଗ, ଓଡ଼ିଆ, ଇଂରାଜୀ
ଅନୁବାଦ, ବ୍ୟାକରଣ, ଟୀକା ଓ ମୁଖବନ୍ଧ ସହ
ପ୍ରକାଶକ—ବିଜୟ ବୁକ୍ ଷ୍ଟୋର, ବ୍ରହ୍ମପୁର ମୂଲ୍ୟ—ଟ ୩-୨୫

## ପ୍ରକାଶ ଅପେକ୍ଷାରେ—

(୧) ଐତିହାସିକ ଓ ଆଞ୍ଚଳିକ ଓଡ଼ିଆ ଶବ୍ଦକୋଷ ।
(୨) ସାମ୍ବନ୍ତନୀ (କବିତା) ।